# ଲକ୍ଷ୍ମୀଧର ନାୟକ : ସାହିତ୍ୟ ଓ ସଂଗ୍ରାମ



୧୧.୧.୧୯୧୩ - ୧୮.୧.୨୦୦୪

ସଂପାଦନା ଓ ସଂକଳନ
ଭୂପେନ୍ ମହାପାତ୍ର

"ଭାଷା ମରିଯାଉଛି । ସାହିତ୍ୟ ଲୋକଙ୍କଠାରୁ ଦୂରେଇ ଯାଉଛି । ସଂସ୍କୃତିରେ ବିଚ୍ଛିନ୍ନ ବୀଣାର ବିଦେଶୀ ଝଙ୍କାର । ଯଦି ସମ୍ଭବ ହୁଏ ଭାଷା ସାହିତ୍ୟ- ସଂସ୍କୃତିକୁ ନୂତନ ସହସ୍ରାବ୍ଦରେ ସମ୍ଭାବନାମୟ କରିବା ପାଇଁ ଜଗନ୍ନାଥ ଦାସର ବଂଶଧରମାନେ ଆଗେଇ ଆସନ୍ତୁ । ଓଡ଼ିଶା ଶବ୍ଦ-କୋଣାର୍କର ଅଷ୍ଟମ ଆଶ୍ଚର୍ଯ୍ୟ ଗଢ଼ନ୍ତୁ ।"

ଲକ୍ଷ୍ମୀଧର ନାୟକଙ୍କ 'ଅତିବଡ଼ି ଜଗନ୍ନାଥ ଦାସ ପୁରସ୍କାର ପ୍ରାପ୍ତି ଅବସରରେ' ପ୍ରଦତ୍ତ ଭାଷଣର କାୟଦାଂଶ ।




# ଲକ୍ଷ୍ମୀଧର ନାୟକ : ସାହିତ୍ୟ ଓ ସଂଗ୍ରାମ

## Laxmidhar Nayak : Sahitya O Sangram

ସଂପାଦନା ଓ ସଂକଳନ :
ଭୂପେନ୍ ମହାପାତ୍ର

Edited & Collected :
Bhupen Mahapatra


ପ୍ରକାଶକ:
ଭୂପେନ ମହାପାତ୍ର
କଥାଘର (ଏଲ୍-୪୫)
ଛେଣ୍ଡ କଲୋନୀ
ରାଉରକେଲା-୭୬୯୦୧୫
୯୪୩୭୬୪୯୯୮୦

Publisher :
Bhupen Mahapatra
Kathaghar (L-45),
Chhend Colony
Rourkela -769015
Phone 0661-2480380
9437649980

ମୁଦ୍ରଣ : ଜଗନ୍ନାଥ ପ୍ରିଟିଂ ପ୍ରେସ୍,
ସେକ୍ଟର-୧, ଜି-ବ୍ଲକ, ରାଉରକେଲା

DTP & Printing Jagannath Printing Press, Sector-1, 'G' block, Rourkela.

ପ୍ରଥମ ପ୍ରକାଶ : ୨୦୦୮

First Edition 2008

ମୂଲ୍ୟ : ୫୦ ଟଙ୍କା

Price 50.00 /-





# ପ୍ରାକ୍ କଥନ

ବହୁ ପ୍ରତିଭାର ଅଧିକାରୀ ଲକ୍ଷ୍ମୀଧର ନାୟକଙ୍କୁ ଏଇ କେତୋଟି ପୃଷ୍ଠାର ସୀମିତ କଳେବର ଭିତରେ ବାନ୍ଧି ରଖିବା ସମ୍ଭବ ନୁହେଁ । ଜଣେ ସଚେତନ ସୃଜନ ଶିଳ୍ପୀ ଖାଲି ନୁହେଁ, ରାଜନୀତି କ୍ଷେତ୍ରରେ ମଧ୍ୟ ସେ ଥିଲେ ଜଣେ ଆଗ ଧାଡ଼ିର ସଂଗ୍ରାମୀ ସୈନିକ । ସେ ହୁଏତ ପ୍ରତ୍ୟକ୍ଷ ରାଜନୀତିରେ ଭାଗ ନ ନେଇ ଥାଇ ପାରନ୍ତି, କିନ୍ତୁ ବିଛିନାଞ୍ଚଳର ମୂଳ ଓଡ଼ିଶା ସହିତ ମିଶ୍ରଣ ପାଇଁ ସେ ଓଡ଼ିଶା ବାହାରେ ରହି ଯୋଉ ସଂଗ୍ରାମ ଜାରୀ ରଖିଥିଲେ ତାହା ତାଙ୍କୁ ସେତେବେଳେ ଓଡ଼ିଶାର ବରେଣ୍ୟ ନେତୃବର୍ଗ ଯଥା ଗୋପବଂଧୁ, ଗୋଦାବରୀଶଙ୍କ ସପ୍ନକୁ ଦିନେ ହୁଏତ୍ ସାକାର କରିବ ବୋଲି ସମସ୍ତେ ଆଶା କରୁଥିଲେ । ସଂଗ୍ରାମ କେବେ ସରେ ନାହିଁ । ତାହା ଜାତୀୟବାଦୀ ହେଉ ବା ମୁକ୍ତିକାମୀ ମଣିଷର ଅଧିକାର ପାଇଁ ହେଉ । ସଂଗ୍ରାମ ଏକ ଅସରନ୍ତି ଅର୍ଥର ବାହକ । ଲକ୍ଷ୍ମୀଧର ଏ କଥା ଭଲ ଭାବେ ବୁଝିଥିଲେ ବୋଲି ଜାମସେଦପୁରରେ ଥିଲାବେଳେ ଗୋଟାଏ ଆର୍ଥିକ ସଚ୍ଛଳତା ଥିବା ପରିବାରରେ ଥାଇ ଏବଂ ନିଜେ ମଧ୍ୟ ରୋଜଗାର କ୍ଷମ ଥାଇ ଗୋଟାଏ ଅସରନ୍ତି ଜାତୀୟତାବାଦୀ ଆନ୍ଦୋଳନରେ ଝାସ ଦେଇ ଥିଲେ । ଆନ୍ଦୋଳନର ବାର୍ତ୍ତା ନିଜେ ଲେଖି, ନିଜ ପ୍ରେସରେ ଛାପି ତାକୁ ଲୋକଙ୍କ ପାଖରେ ପହଞ୍ଚେଇବା ପାଇଁ ସେ ବ୍ୟସ୍ତ ହେଇ ପଡୁଥିଲେ । ପ୍ରାକ୍ ସାଧୀନତା କାଳରେ ଏବଂ ବିଶେଷ କରି ସମଗ୍ର ଭାରତବର୍ଷ ଯେତେବେଳେ ବ୍ରିଟିଶ ଶାସନର ଅତ୍ୟାଚାରରେ ସାଧୀନତା ଆନ୍ଦୋଳନ ପାଇଁ ଜର୍ଜରିତ ସେତେବେଳେ ଲକ୍ଷ୍ମୀଧରଙ୍କ ଆଉ ଏକ ଆନ୍ଦୋଳନ କେତେ ବିପଦପୂର୍ଣ୍ଣ ସେ କଥା ସହଜେ ବୁଝି ହେଇଯାଏ । ଲକ୍ଷ୍ମୀଧର ସେ ବିପଦକୁ ଭୟ କରି ନ ଥିଲେ । ସାଲିସ କରି ନାହାନ୍ତି ସେ କେବେ ଅନ୍ୟାୟ ଓ ନୀତିବିହୀନତା ସହିତ । ସେ ସମୟର ପୁରୁଣାକାଳିଆ ପ୍ରେସକୁ କାନ୍ଧରେ ବହି ସେ ଜାମସେଦପୁରରୁ ରାଉରକେଲା, ରାଉରକେଲାରୁ ଜଟଣୀ-ବହୁ ଦେଶ ବୁଲିଛନ୍ତି ।

ଓଡ଼ିଆ ଜାତି ପାଇଁ ସେ ଲଢ଼ିଥିଲେ ମଧ୍ୟ ଓଡ଼ିଆ ଜାତିର ନାଡ଼ି ନକ୍ଷତ୍ର ମଧ୍ୟ ସେ ଚିହ୍ନି ପାରିଥିଲେ । ପ୍ରଶାସନର ଅତ୍ୟାଚାର ତାଙ୍କୁ ଯେତିକି ଯନ୍ତ୍ରଣା ଜର୍ଜରିତ କରିଚି ତା ଅପେକ୍ଷା ବେଶୀ ଆଘାତ ସେ ପାଇଚନ୍ତି ତାଙ୍କ ବଂଧୁମାନଙ୍କ ବିଶ୍ୱାସ ଘାତକତା ପାଇଁ । ଏ ସବୁ ଉଦ୍‌ବେଗ ଓ ଅମୂର୍ତ୍ତ ଆବେଗାନୁଭୂତିର ପରିସ୍ଫୁରଣ ଘଟିଚି ତାଙ୍କ ଉପନ୍ୟାସ 'ମୋ ସପ୍ନର ସହରରେ' । ଏହାକୁ ଖାଲି ଏକ ସାଧାରଣ ଉପନ୍ୟାସ କହି ହେବ ନାହିଁ ବରଂ ତାଙ୍କ ଆତ୍ମାର ଅଭିନବ ସଂସ୍କରଣଟିଏ କହିବା ଠିକ ହେବ । ବହୁ ଛଳନାର ଅସ୍ପଷ୍ଟ ଚରିତ୍ରମାନଙ୍କ ମୁଖା ଏଥିରେ ଖୋଲା ଯାଇଚି ଏବଂ ବହୁ ଶୋଷଣର ନଗ୍ନ ରୂପ ଏଥିରେ ଚିତ୍ରିତ ହୋଇଛି । ଅସଲ ସହରଟି

ଜିଇ ଉଠିଚି ଗୋଟିଏ ଶକ୍ତିଶାଳୀ କଲମମୁନରେ, ଯା'ର ନଗ୍ନ ଓ ବିଭତ୍ସ ରୂପ ଆମେ ଏବେ ସଚରାଚର ଦେଖୁଛୁ । ଭୋଗବାଦୀ ସଂସ୍କୃତିରେ ଏ ଅବକ୍ଷୟର ପ୍ରତିନିଧିମାନେ ଏବେ ଅଧିକ ସକ୍ରୀୟ ଏବଂ ଅଧିକ ସାମ୍ରାଜ୍ୟର ଅଧିକାରୀ ।

ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ଦୁଇଟି ଗଳ୍ପରେ ('ଘାଟେର କଥା' ଓ 'ରାଜପଥେର କଥା') ଘାଟ ଓ ପଥକୁ ନାୟକ କରି ସେ ଗଳ୍ପକୁ ଜୀବନ୍ତ ରୂପ ଦେଇଚନ୍ତି । ସେଠି ସେ ନିର୍ଜୀବ ବସ୍ତୁଟି ଜୀବନ୍ୟାସ ପାଇଚି । ତାକୁ 'ମାନବାୟନ' କୁହାଯାଉଚି । ଲକ୍ଷ୍ମୀଧର ସେମିତି ନବ ଜନ୍ମିତ ରାଉରକେଲାକୁ ଜୀବନ୍ତ କରି ଦେଇଚନ୍ତି । ସେ ଜୀବନ ଭିତରେ ସେ ନିଜକୁ ଦେଖିଚନ୍ତି ଓ ଅନ୍ୟମାନଙ୍କୁ ମଧ୍ୟ ଦେଖିଚନ୍ତି । ସେମିତି ବି ଅଛନ୍ତି ଆହୁରି ଅନେକ । ପଥରରୁ ଅହଲ୍ୟା ଓ ଅହଲ୍ୟାରୁ ଆତ୍ମୋନ୍ନତି । ଲେଖକଙ୍କ ବିରାଟ ସ୍ୱପ୍ନ ସବୁ ସେ ସହରରେ ଧୂଳିସାତ ହେଇ ଯାଇଥିବ । ଦିବାସ୍ୱପ୍ନ ପରି ଭାଙ୍ଗି ଚୁରମାର ହେଇ ଯାଇଥିବ । ଜାମସେଦପୁରରେ ଅନେକ ଅତ୍ୟାଚାର ଓ ପୀଡ଼ନ ପରେ ସେ ଯେତେବେଳେ ନିଜ ମାଟି ଓଡିଶାକୁ ଆସିଚନ୍ତି ସେ ସେତେବେଳେ ଆଣିଥିବେ ଅଣ୍ଟାଭର୍ତ୍ତି ସ୍ୱପ୍ନ ଓ ଶାମୁକା । ନୂଆ ଶିଳ୍ପ ସହରରେ ସେ ଭାବିଥିବେ ପୀଡ଼ନ ନ ଥିବ ଏବଂ ସେ ସ୍ୱପ୍ନ ଓ ଶାମୁକା ସବୁ ବାଣ୍ଟି ବାଣ୍ଟି ସର୍ଜନା କରିବେ ନୂତନ ପୃଥିବୀ, ନୂତନ ଓଡ଼ିଶା । ନୂଆ କରି ଲେଖିବେ ତାର ଭାଷା ଓ ସାହିତ୍ୟ । ନୂଆ ଗଛ ରୋପିବେ । ଫୁଲ ଓ ଫଳରେ ନଇଁ ପଡ଼ିବ ସେ ଗଛ । କିନ୍ତୁ ହାୟ ! ଏ ମଣିଷ ଗଛରୁ ଫୁଲ ତୋଳେ ଅଥଚ ଦିଏ ଦେବତାକୁ । ସ୍ୱାର୍ଥବାଦର ନୂତନ ଖସଡ଼ା । କେବଳ ମୁଁ ଅସ୍ମିତାର ମୋହ । ମଣିଷ ଗଛକୁ ମୋଟେ ଦେଖେନି । ଗଛ କଥା ଭୁଲି ଯାଏ । ମଣିଷର ନେଗେଟିଭ ଆଟିଚିଉଡ୍ ।

ଏବେ ଆମେ ତାଙ୍କର ଅନ୍ୟ ସାହିତ୍ୟ ଉପରକୁ ଆସିବା । ଆମେ ଜାଣୁଁ ସେ ଜଣେ ବହୁମୁଖୀ ପ୍ରତିଭା । ସାହିତ୍ୟର ସବୁ ଶାଖାରେ ତାଙ୍କ ସାକ୍ଷର । ଗଳ୍ପ, କବିତା, ନାଟକ, ପ୍ରବଂଧ, ଉପନ୍ୟାସ, ଜୀବନୀ, ଭ୍ରମଣ କାହାଣୀ–କାହାକୁ ସେ ବାଦ ଦେଇ ନାହାନ୍ତି । ପ୍ରକୃତରେ କେତୋଟି ତାଙ୍କର ପ୍ରକାଶିତ ଗ୍ରନ୍ଥ ତାହା ଠିକ୍ ଜଣା ପଡ଼ିନି । କିନ୍ତୁ ୫ଟି କବିତା ପୁସ୍ତକ, ୪ଟି ଗଳ୍ପ ସଂକଳନ, ୩ଟି ନାଟକ, ୨ଟି ପ୍ରବଂଧ ପୁସ୍ତକ, ୨୮ଟି ଉପନ୍ୟାସ ଓ ଭ୍ରମଣ କାହାଣୀ ଓ ଗୋଟିଏ ଜୀବନୀ ପ୍ରକାଶ ପାଇଥିବା କଥା ଉଲ୍ଲେଖ ଅଛି । ତା ଛଡ଼ା ଏଯାବତ୍ ପ୍ରକାଶ ପାଇଥିବା ଏକମାତ୍ର ଓଡ଼ିଆ ଉପନ୍ୟାସ ଗ୍ରନ୍ଥ ସୂଚୀ ଓ ପରିଚୟରେ (ଓଡ଼ିଶା ସାହିତ୍ୟ ଏକାଡ଼େମୀ) ଆଉ କେତୋଟି ଉପନ୍ୟାସ ଦେଖିବାକୁ ମିଳେ । ବଂଧୁମାନେ ବିଭିନ୍ନ ସମୟରେ ତାଙ୍କର ଆଉ କେତୋଟି ପୁସ୍ତକଥିବା କଥା ମଧ୍ୟ କୁହନ୍ତି । ହେମନ୍ତ କୁମାର ଦାସ ତାଙ୍କ ପ୍ରବଂଧରେ ଆଉ ଚରୋଟି ନାଟକ ଲେଖିଥିବା କଥା କହିଛନ୍ତି । (ପୃ ୫୨) କିନ୍ତୁ ଆଶ୍ଚର୍ଯ୍ୟର କଥା କେବଳ ଗୋଟିଏ ବର୍ଷରେ (୧୯୪୭) ସେ ସାତଟି ଉପନ୍ୟାସ ଲେଖିଥିବାର ତାଙ୍କର

ଜଣାପଡ଼େ । ଏହାକୁ ଓଡ଼ିଶାର ରେକର୍ଡ କି ଭାରତର ରେକର୍ଡ କୁହାଯିବ ଆମେ ଜାଣୁନା । ଅଥଚ ସେଇ ସମୟ ଭିତରେ ତାଙ୍କର 'ଗଳ୍ପ ଗୁଞ୍ଜନ' ନାମକ ଏକ ଗଳ୍ପ ସଂକଳନ ମଧ୍ୟ ପ୍ରକାଶ ପାଇଛି ।

ଲକ୍ଷ୍ମୀଧରଙ୍କୁ ସାଧାରଣ ଭାବେ ଜଣେ ରୋମାଣ୍ଟିକ ଲେଖକ କହି ହେବ ନାହିଁ । ସେ ତାଙ୍କ ସାକ୍ଷାତକାରରେ ତାକୁ ପରିଷ୍କାର କରି ଦେଇଚନ୍ତି । ଗାନ୍ଧୀ, ବୁଦ୍ଧ, ମାର୍କସ ଓ ଲେନିନଙ୍କୁ ପଢ଼ିଲା ପରେ ସେ ତାଙ୍କ ରାସ୍ତା ବାଛି ନେଇଚନ୍ତି । ଆଦ୍ୟ ଯୌବନରେ ତାଙ୍କର କେତୋଟି ଉପନ୍ୟାସ, ଗଳ୍ପ, କବିତାରେ ରୋମାଣ୍ଟିକ ଭାବଧାରା ଦେଖିବାକୁ ମିଳିଥିଲେ ମଧ୍ୟ ସେ ରୋମାଣ୍ଟିସିଜମକୁ ଅବକ୍ଷୟୀ ଅବାସ୍ତବତା ଆଡ଼କୁ ଯିବାକୁ ଦେଇନାହାନ୍ତି । ଯୁକ୍ତିଯୁକ୍ତ ବିଧି ବ୍ୟବସ୍ଥାକୁ ସେ ଏ ପାଖ ସେ ପାଖ କରି ନାହାନ୍ତି । ପ୍ରେମକୁ ସେ ସର୍ଗୀୟ କରିଛନ୍ତି ସିନା କିନ୍ତୁ ଦେହବାଦୀ ସ୍ଖଳନରେ ପରିଣତ କରିନାହାନ୍ତି । ତାହା ହିଁ ପ୍ରେମର ମହତ୍ୱ ଯାହା ଯୁଗେ ଯୁଗେ ଆମ ସାହିତ୍ୟକୁ ମହୀୟାନ୍ କରି ଆସିଚି ।

ମାନବିକ ଦର୍ଶନର ଉତ୍ତରଣ ଦେଖିବାକୁ ମିଳେ ତାଙ୍କ ସାହିତ୍ୟରେ ପରବର୍ତ୍ତୀ ପର୍ଯ୍ୟାୟରେ । ବଂଶୀଧର ମହାପାତ୍ର ତାକୁ କହିଚନ୍ତି 'ରେନେସାଁ' । ନାଟକ ହେଉ ବା ଗଳ୍ପ ହେଉ, ଉପନ୍ୟାସ ହେଉ ବା କବିତା ହେଉ ସବୁଠି ଗୋଟେ ପରିବର୍ତ୍ତନର କଥା । ପାରମ୍ପରିକତାକୁ ଭାଙ୍ଗି ଆଗକୁ ବାହାରି ଆସ । ଅଂଧାରରୁ ଆଲୋକକୁ ଆସ । ସୂର୍ଯ୍ୟାଲୋକକୁ ଆପଣେଇ ନିଅ । 'ଖୋଲା ଝର୍କା'ର ଦିଗବଳୟକୁ ଦେଖ । 'କୁଣ୍ଠିତ ଜ୍ୟୋସ୍ନା'ର ଅଚିହ୍ନା ବଳୟ ପାରିହେଇ ଆସ । ମୁକ୍ତିକାମୀ ମଣିଷର ଆଶା ଓ ଆକାଂକ୍ଷା ସଂଗ୍ରାମରେ ହିଁ ବଞ୍ଚିଥାଏ । ତାକୁ ପଛ କରି ହେବ ନାହିଁ ।

ସର୍ବହରା ହରାନା ତୋର ଆଶା
ଉଇଁବ ଦିନେ ଅନ୍ଧାର ଚିରି ଆଲୋକମୟ ଉଷା
ସର୍ବହରା ହରାନା ତୋର ଆଶା (ସର୍ବହରା)
କିମ୍ବା
ଭୋକ ଓପାସେ ଅର୍ଦ୍ଧପ୍ରାଣ
ଜାଗିଛୁ ଆମେ ସ୍ୱର୍ଦ୍ଧମାନ
ବିଦ୍ରୋହର ଲଗ୍ନ ଦେଖିଁ, ବିପ୍ଳବର ରଥେ
ଛୁଟିବୁଁ ଆମେ ଅଗ୍ନିଜଳା
ରକ୍ତଝରା ପଥେ । (ଖୋଲା ଝର୍କା)

ଲକ୍ଷ୍ମୀଧର ଥିଲେ ନିଜେ ଜଣେ ଗୀତିକାର ଓ ଗାୟକ ମଧ୍ୟ । ଗଜଲ ଲେଖି ତାର

ପ୍ରଥମ ଉଦ୍ଘାଟନ ମଧ୍ୟ ତାଙ୍କରି ପାଟିରେ। ତାକୁ ମଧ୍ୟ ରେକର୍ଡ କରାନ୍ତି। ଏ ସବୁର ଇତିହାସ ବର୍ଣ୍ଣନା କରିଚନ୍ତି ମହେଶ୍ୱର ପଣ୍ଡା ଓ ବଂଶୀଧର ମହାପାତ୍ର ତାଙ୍କ ଲେଖାରେ। ବିଷ୍ଣୁ ବାବୁ ଲେଖିଚନ୍ତି କବିତା ଆବୃତ୍ତି କଥା ଆମେ ଜାଣୁଁ କିନ୍ତୁ ଗଳ୍ପ ପାଠର ଆବୃତ୍ତି କଳା ? ଲକ୍ଷ୍ମୀଧର ବାବୁ ଶିଖାନ୍ତି।

୧୯୫୪ ମସିହାରେ ସେ ଆସନ୍ତି ରାଉରକେଲାକୁ ଜଣେ ପ୍ରେସ ମାଲିକ ଓ ସାମ୍ବାଦିକ ହିସାବରେ। ଲେଖକ ଲକ୍ଷ୍ମୀଧରଙ୍କୁ ସେତେବେଳେ ବୋଧେ ରଜନୀକାନ୍ତ ଦାସଙ୍କ ଛଡ଼ା ଆଉ କେହି ଜାଣି ନ ଥିଲେ। ୧୯୬୧ ବେଳକୁ ବଂଶୀଧର ମହାପାତ୍ର ଓ ହରେକୃଷ୍ଣ ଦାସଙ୍କ ମାଧ୍ୟମରେ ସେ ପ୍ରବେଶ କରନ୍ତି ରାଉରକେଲାର ସାହିତ୍ୟ ଜଗତରେ। ସେତେବେଳେ ରାଉରକେଲାରେ ସାହିତ୍ୟ ଓ ସାହିତ୍ୟିକଙ୍କ ଆକାଶ ଥିଲା ଫାଙ୍କା। ଆରମ୍ଭ ହୁଏ ପ୍ରଥମ ବୀଜ ବପନ। ଏ ସମସ୍ତ କଥା ବିଷ୍ଣୁ ରାଉତରାୟ ଲେଖିଚନ୍ତି ତାଙ୍କ ଲେଖାରେ। ତାକୁ ସମର୍ଥନ କରିଚନ୍ତି ବଂଶୀଧର ମହାପାତ୍ର ଓ ମହେଶ୍ୱର ପଣ୍ଡା। ଯୋଉ ମଂଜି ସେତେବେଳେ ଲକ୍ଷ୍ମୀଧର ଓ ରଜନୀବାବୁ ପୋତିଥିଲେ ତାହା ଏବେ ବିଶାଳ ବୃକ୍ଷରେ ପରିଣତ ହେଇଚି । କଲଚରାଲ ଏକାଡ଼େମୀ ଯାହାର ଆନୁଷ୍ଠାନିକ ଉଦଘାଟନ ହୁଏ ୧୯୬୨ ଏପ୍ରିଲରେ ଏବଂ ତ୍ରୟୋମାସିକ ସାହିତ୍ୟ ପତ୍ରିକା ଯା'ର ଜନ୍ମ ହୁଏ ସେହି ବର୍ଷ ଅଗଷ୍ଟ ମାସରେ, ଏବେ ବଢ଼ି ବଢ଼ି ଅର୍ଦ୍ଧଶତାବ୍ଦୀ ଛୁଇଁବାକୁ ବସିଲାଣି। ଏବେ ବେଳ ଗଡ଼ି ଯାଇଛି ବୋଲି ତାର ଜନ୍ମ ତିଥିକୁ ଏପାଖ ସେପାଖ କରିହେବ ନାହିଁ । ବିଷ୍ଣୁ ବାବୁ ତାକୁ ସ୍ପଷ୍ଟ କରିଦେଇଛନ୍ତି। ଅନୁଷ୍ଠାନର ସଂବିଧାନ ଯାହା ୧୯୬୫ରେ ପ୍ରକାଶ ପାଇଛି ତାହା ଆଉ ଏକ ଜ୍ୱଳନ୍ତ ସାକ୍ଷୀ।

ଅନୁଷ୍ଠାନର ସାହିତ୍ୟ ସାଧାରଣ ନ ଥିଲା। 'କଳା କଳା ପାଇଁ ନୁହେଁ, ଜୀବନ ପାଇଁ'ର ସ୍ଲୋଗାନ ଦେଇଥିଲା। ସେଇ ସ୍ଲୋଗାନ ଏ ଯାଏ ଜୀବିତ ଯଦିଓ ଓଡ଼ିଶାର ଅନ୍ୟାନ୍ୟ ସ୍ଥାନରୁ ସେ ସ୍ୱର ପ୍ରାୟ ଅସ୍ପଷ୍ଟ ହେଇ ଆସିଲାଣି। କଲଚରାଲ ଏକାଡ଼େମୀ ସହିତ ଲକ୍ଷ୍ମୀଧର ବାବୁଙ୍କ ସଂପୃକ୍ତି ବେଶୀ ଦିନର ନୁହେଁ। କିନ୍ତୁ ରଜନୀ ବାବୁ ଥିଲେ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ। ଘରର ମୂଳଦୁଆ ପିନ୍ଧା ଲକ୍ଷ୍ମୀଧର ବାବୁ ଦେଲେ ରଜନୀ ବାବୁ ତାର ନିର୍ମାଣ ଶେଷ କଲେ। ଆମ ଜାଣିବାରେ ଗୋଟାଏ ସାହିତ୍ୟାନୁଷ୍ଠାନ ମାଗଣାରେ ବିଶାଳ ଘରଟିଏ କର୍ତ୍ତୃପକ୍ଷଠୁ ପାଇବା ବୋଧେ ପ୍ରଥମ। କିନ୍ତୁ କଅଣ ହେଲା ସେ ଦୁଇ ବିଶ୍ୱକର୍ମାଙ୍କ ଭାଗ୍ୟ ? ବିଷ୍ଣୁ ବାବୁ ଲେଖିଛନ୍ତି ଲକ୍ଷ୍ମୀଧର ବାବୁ ୧୯୬୪ରେ ଦିନେ ହଠାତ୍ ଇସ୍ତଫା ଦେଇ ଚାଲିଗଲେ ଏବଂ ରଜନୀ ବାବୁ ୧୯୯୬ରେ 'ଅମଙ୍ଗ' ହେଇ ଚାଲିଗଲେ। ଏ ଦୁଇଟା କଥାକୁ ବିନା ପ୍ରଶ୍ନବାଚୀରେ ବିଚାର କରିହେବ ନାହିଁ। ଅନେକ କାହିଁକିର ଉତ୍ତର ଆଜି ଦେବା ସମ୍ଭବ ନ ଥିଲେ ମଧ୍ୟ ଏତକ କହିହେବ ଯେ ତାହା ହୁଏତ 'ସେରିମୋନିଅସ୍' ନ ଥିଲା। ଏ ସବୁର ପ୍ରମାଣ ଆମର ରକ୍ତ ଓ

ଅସ୍ମିମଙ୍ଗାଗତ । ଅସ୍ପୃଶ୍ୟା ଆମ ହାଡ଼େ ହାଡ଼େ ବିରାଜୁଚି । ଲକ୍ଷ୍ମୀଧର ବାବୁ ନିଜେ କହିଚନ୍ତି ସୁବ୍ରତ ମୁହଁରେ (ମୋ ସପ୍ନର ସହରରେ ପୃଷ୍ଠା ୪୬୩ ଓ ୪୬୭) । କି ଦୁଃଖ ଓ ବେଦନାର ସେ ଭାଷା । କି କରୁଣ ସେ ସର ।

'କଲଚରାଲ ଏସୋସିଏସନ'ରୁ 'କଲଚରାଲ ଏକାଡ଼େମୀ'କୁ ଅଲଗା (୧୯୬୨) କରିବାର ଏକମାତ୍ର ଉଦ୍ଦେଶ୍ୟ ଥିଲା ସାହିତ୍ୟକୁ ଅସାହିତ୍ୟରୁ ଅଲଗା କରିବା । କିନ୍ତୁ ବ୍ୟକ୍ତି ସାର୍ଥ ଏ ସବୁକୁ ସମର୍ଥନ କରେ ନାହିଁ । ସେମାନେ ଏଇଠି ଅଲଗା ହେଇ ଠିଆ ହେଇ ପାରନ୍ତି ନାହିଁ । ହାତ ମିଶାନ୍ତି । କ୍ଷତି ହୁଏ ସମାଜର ।

ରାଉରକେଲାରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିକୁ ଦାନ ଏ ଦୁଇ ମହାରଥୀଙ୍କର ଅତୁଳନୀୟ । ଦୀର୍ଘ ଅର୍ଦ୍ଧ ଶତାବ୍ଦୀର ଇତିହାସରେ ଏ ଦୁଇ ଜଣକୁ ସତନ୍ତ୍ର ସ୍ଥାନ ଦେବାକୁ ଆମେ ବାଧ । ଦୁଇ ଜଣଙ୍କ ଜୀବନୀ ମଧ ଅତ୍ୟନ୍ତ ଘଟଣା ବହୁଳ । ଜଣେ ସାଧୀନତା ସଂଗ୍ରାମୀ ଭାବରେ ସମଗ୍ର ବାଲ୍ୟ ଜୀବନରୁ ଅତ୍ୟାଚାର ପରେ ଅତ୍ୟାଚାର ସହି ଆସିଥିଲା ବେଳେ ଆଉ ଜଣେ ଯୁବାବସ୍ଥାରୁ ଜାତିର ମୁକ୍ତି ପାଇଁ ଆଉ ଏକ ସାଧୀନତା ସଂଗ୍ରାମ କରି ନିଜ ଜୀବନକୁ ତିଳ ତିଳ କରି ନିଃଶେଷ କରି ଦେଇଚନ୍ତି । ଜଣେ ନୀତି ଓ ଆଦର୍ଶକୁ ଜାବୁଡ଼ି ଧରି ସାରା ଜୀବନ ଗୋଟିଏ ଅଧା ଖପର ଓ ଅଧା ଟିଣ ଘରେ ବିତାଇ ଦେଇଥିଲା ବେଳେ ଆଉ ଜଣେ ଠିକ୍ ସେମିତି ନିଜ ଭିଟାମାଟିରେ ଖଣ୍ଡେ ଅଯନ୍ ବର୍ଦ୍ଧିତ ଅଧାଟିଣ ଓ ଅଧାପକ୍କା ଘରେ ଜୀବନ ବିତାଇ ଦେଲେ । ଶେଷ କେଇ ବର୍ଷ ସେ ଥିଲେ ଦିଲ୍ଲୀରେ, ପୁଅ ପାଖରେ । ଅବଶ୍ୟ ଦୁହେଁ ଚାହିଁଥିଲେ ଅନ୍ୟମାନଙ୍କ ପରି ବିଶାଳ କୋଠା, ଗାଡ଼ି ଇତ୍ୟାଦି କରି ପାରି ଥାଆନ୍ତେ । ରାଜନୀତି କିମ୍ବା ଅସତ୍ୟର ବେପାର ବଣିଜ କରିଥିଲେ କାହିଁ କେତେ ଉପରକୁ ଉଠି ଯାଇ ପାରି ଥାଆନ୍ତେ । କିନ୍ତୁ ସେ ସବୁ ସେମାନେ କିଛି କରି ପାରିଲେନି । ସମସ୍ତେ ଜାତି ପାଇଁ 'ଭାରତ ଭବନ' ତିଆରି କରନ୍ତି ନାହିଁ କି ସମସ୍ତେ ମଧ ନିଜ ପାଇଁ 'ଭବନ' ନିର୍ମାଣ କରନ୍ତି ନାହିଁ । ସମସ୍ତେ ନିଅନ୍ତି ନାହିଁ କି ସମସ୍ତେ ମଧ ଦିଅନ୍ତି ନାହିଁ । କିନ୍ତୁ ରଜନୀକାନ୍ତ ଓ ଲକ୍ଷ୍ମୀଧର ତାଙ୍କ ଜୀବନ କାଳ ଭିତରେ 'ଦେବା' ଛଡ଼ା 'ନେବା'ର ନାଁ ଧରି ନାହାନ୍ତି ।

ତଥାପି ଜାତି ସେମାନଙ୍କୁ ଚିହ୍ନିଲା ନାହିଁ । ଆମେ ଯୋଉମାନେ ବ୍ୟକ୍ତିଗତ ଭାବରେ ସେମାନଙ୍କର ଗୁଣଗ୍ରାହୀ ଥିଲୁଁ ଆମେ ବି ତାଙ୍କ ଆଡ଼କୁ ପଛ କରି ଦେଲୁଁ । ଜଣକୁ ଏ ଜାତି ସାମାନ୍ୟ ଉପାୟନ ଖଣ୍ଡିଏ ଦେଇଥିଲା ବେଳେ ଅନ୍ୟ ଜଣେ ଆଖି କାନ ଅକାମୀ ହେଇ ଯାଇ ଗୋଟିଏ ପାଦ ସର୍ଗକୁ ବଢ଼ାଉଥିବା ଅବସ୍ଥାରେ 'ଏଇଟା ନେଇ ଯାଅ' ବୋଲି ଧରେଇ ଦେଇ ଥିଲେ ।

ଲକ୍ଷ୍ମୀଧର ବାବୁଙ୍କ ସମ୍ପର୍କରେ ଆଜିଯାଏ ଯେତେ ଲେଖା ପ୍ରକାଶ ପାଇଚି ସେଥିରେ

ରାଉରକେଲା ରହଣୀ ପ୍ରସଙ୍ଗ ବାଦ ପଡ଼ିଯାଇଚି । ୧୯୮୪ରେ ଯେତେବେଳେ 'ଲକ୍ଷ୍ମୀଧର ପରିକ୍ରମା' ପ୍ରକାଶ ପାଇଲା ସେତେବେଳେ ମଧ୍ୟ ସେଥିରେ ଏ ବିଷୟରେ ଗୋଟିଏ ଧାଡ଼ିବି ଲେଖା ଯାଇନି । କିନ୍ତୁ ତାଙ୍କର ରାଉରକେଲା ପ୍ରତି ଅବଦାନକୁ କୌଣସି ମତେ ନ୍ୟୁନ କରି ହେବ ନାହିଁ ଆମେ ତାକୁ ଲୋକଲୋଚନକୁ ନ ଆଣିଲେ ଇତିହାସ ଆମକୁ କ୍ଷମା କରିବ ନାହିଁ ।

ଏ ସଂକଳନରେ ରାଉରକେଲାରେ ତାଙ୍କର ଦୀର୍ଘ ପ୍ରାୟ ୧୫ ବର୍ଷର ରହଣୀ ମଧ୍ୟରେ ଘଟିଥିବା ବହୁ ଘଟଣା ମଧ୍ୟରୁ କେବଳ ସାହିତ୍ୟ ଓ ସଂସ୍କୃତି ସଂପର୍କିତ କିଛି ଘଟଣାକୁ ସ୍ଥାନିତ କରିବାକୁ ଚେଷ୍ଟା କରାଯାଇଚି । ମୁଁ ଜାମସେଦପୁରରେ ତାଙ୍କ ସଂଗ୍ରାମର ଇତିହାସ ପାଇବା ପାଇଁ ଚେଷ୍ଟା କରି ମଧ୍ୟ ସଫଳ ହେଇ ପାରିନାହିଁ । ଏ ସବୁ ବାଦ ଦେଇ ଗୋଟାଏ ପୂର୍ଣ୍ଣାଙ୍ଗ ଚିତ୍ର ଅଙ୍କା ଯାଇ ପାରେନା । ବିଶେଷ କରି ଜେହି କେହି ତାକୁ ଭୁଲ ରଙ୍ଗରେ ଚିହ୍ନିତ କରିବାକୁ ଚେଷ୍ଟା କରୁଥିବା ବେଳେ ଗୋଟାଏ ପୂର୍ଣ୍ଣାଙ୍ଗ ଚିତ୍ରର ଆବଶ୍ୟକତା ଅବଶ୍ୟ ରହିଚି ।

ଏହି ପୁସ୍ତକର ପ୍ରସ୍ତୁତି ପର୍ବ ଆରମ୍ଭ ହେଇଥିଲା ଲକ୍ଷ୍ମୀଧର ବାବୁଙ୍କ ମୃତ୍ୟୁ ପରେ ପରେ । ଦୀର୍ଘ ଚାରିବର୍ଷ କାଳ ପରିଶ୍ରମ ପରେ ଆଜି ତା'ର ଆତ୍ମ ପ୍ରକାଶର ବେଳ । ଏଇ ଅବକାଶରେ ମୁଁ ଲେଖକମାନଙ୍କ ଠାରେ କୃତଜ୍ଞତା ପ୍ରକାଶ କରିବା ସହିତ ଯୋଉମାନେ ମୋତେ ଏଥିପାଇଁ ଲେଖା ସଂଗ୍ରହ କରିବାରେ ସାହାଯ୍ୟ କରିଚନ୍ତି ତାଙ୍କ ଠାରେ ମଧ୍ୟ ଋଣୀ ।

ଭୂପେନ ମହାପାତ୍ର

# ଲକ୍ଷ୍ମୀଧର ପୁସ୍ତକାବଳୀ

| ପୁସ୍ତକର ନାମ | ପ୍ରଥମ ପ୍ରକାଶ କାଳ |
|---|---|
| **କବିତା:** | |
| ବିରହିଣୀ ଓ ଅନ୍ୟାନ୍ୟ କବିତା | ୧୯୩୪ |
| ସେ | ୧୯୪୦ |
| ଖୋଲା ଝର୍କା | ୧୯୭୦ |
| କ୍ୱଚିତ୍ ଜ୍ୟୋତ୍ସ୍ନା | ୧୯୮୨ |
| କବିତା ୫୦ ବର୍ଷର | ୧୯୮୪ |
| **ଗଳ୍ପ :** | |
| ଗୋଟିଏ ରାତିର ସାଥି | ୧୯୪୫ |
| କଙ୍କାଳ | ୧୯୪୫ |
| ଗଳ୍ପ ଗୁଞ୍ଜନ | ୧୯୪୭ |
| ପାପର ଶେଷ ପୃଷ୍ଠା | |
| **ନାଟକ :** | |
| ଧର୍ମ ପତ୍ନୀ | ୧୯୪୦ |
| ଜମିଦାର | ୧୯୪୨ |
| ଲାଲ୍ ଓବୁକ୍ | ୧୯୪୨ |
| **ପ୍ରବନ୍ଧ :** | |
| ସିଂହଭୂମିର ଗୋପବନ୍ଧୁ | ୧୯୭୬ |
| କେବେ କେବେ ଲେଖା | ୧୯୮୦ |
| **ଉପନ୍ୟାସ :** | |
| ଉଦ୍‌ଭ୍ରାନ୍ତ | ୧୯୩୪ |
| ଭୁଲିଲ ସତେ ସଖି | ୧୯୩୯ |
| ସବୁଜଣ ମିଛ | ୧୯୩୬ |
| ଧରାଛୁଆଁର ବାହାରେ | ୧୯୩୮ |
| ଅପୂର୍ବ ପ୍ରେମ | ୧୯୪୦ |
| ନୁହେଁ ସେ ପ୍ରେମିକା | ୧୯୪୦ |

| | |
|---|---|
| ସୁକାନ୍ତର ସ୍ତ୍ରୀ | ୧୯୪୦ |
| ବର୍ଷାର ଶେଷ | ୧୯୪୨ |
| ଆସିବ କେବେ ପ୍ରିୟ | ୧୯୪୨ |
| ଚରିତ୍ରହୀନାର ଚିଠି | ୧୯୪୨ |
| ସୁନାପ୍ରତିମା | ୧୯୪୫ |
| ସର୍ବହରା | ୧୮୪୬ |
| ସେ ମରିନାହିଁ | ୧୯୪୬ |
| ହାରେ ଦୁର୍ଭାଗାଦେଶ | ୧୯୪୬ |
| ସୁରଭି ଭୋଜନାଳୟ | ୧୯୪୬ |
| ବାସନ୍ତୀ ପାଠାଗାର | ୧୯୪୬ |
| ସେଇ ସୁନ୍ଦରୀ ତରୁଣୀ | ୧୯୪୬ |
| ପ୍ରତିମା କଥା କୁହ | ୧୯୪୬ |
| ଅଗ୍ନିଶପଥ | ୧୯୬୨ |
| କେହି ପ୍ରେମିକା, କେହି ପ୍ରେମିକା | ୧୯୭୦ |
| ବେଳାଭୂମୀର ଅନୁରାଧା | ୧୯୭୫ |
| ମୋ ସପ୍ନର ସହର | ୧୯୮୧ |
| ରକ୍ତଝରା ଭୋର | ୧୯୮୧ |
| ନଟୀ ସୁନୟନା | ୧୯୮୨ |
| ନାୟିକା ବଧୂ | ୧୯୮୨ |
| ସେଇଆଲୁଅ ପାଇଁ | ୧୯୮୨ |
| ଏକ ରେଖା ଦୁଇ ବିନ୍ଦୁ | |

**ଭ୍ରମଣ କାହାଣୀ :**

| | |
|---|---|
| ବିଦେଶରେ ଶହେ ଦିନ | ୧୯୮୪ |

**ଜୀବନୀ :**

| | |
|---|---|
| ଜନନାୟକ ନୀଳକଣ୍ଠ | ୧୯୮୪ |

*****

# ସୂଚୀପତ୍ର

# ଲକ୍ଷ୍ମୀଧର ନାୟକ
# ଏବଂ
# ମୋର ପ୍ରଥମ ପ୍ରତିଶ୍ରୁତି ଦିନ ଗୁଡିକ।

ବିଷ୍ଣୁ ରାଉତରାୟ

ଥିଲି ଦିନେ ଫର୍ନିସ ଶ୍ରମିକ
ଆଜି ପ୍ରେସ୍ ମେକାନିକ୍
ଛୋଟ ମୋର ଛାପାଖାନା ନେଇ ଘୁରିବୁଲେ ବିଭିନ୍ନ ସହରେ
ଟାଟାରୁ କଟକ, କଟକରୁ ବାରିପଦା
ପୁଣି ଟାଟା, ରାଉରକେଲା, ମନଇଛା ଇଆଡ଼େ ସିଆଡ଼େ
ବିଦ୍ରୋହୀ ମୁଁ ହାଡ଼େ ହାଡ଼େ।
(ପଦ୍ୟାଂଶ : କବିତା 'ସତନ୍ତ୍ର ଦ୍ୱରଣ')

ଅଦ୍ଭୁତ ମଣିଷ ଲକ୍ଷ୍ମୀଧର ନାୟକ। ନବ ଗୁଞ୍ଜର ନାଁ ସପ୍ତରଂଗ ରୋମାଞ୍ଚିତ ବିଳସ ଇନ୍ଦ୍ରଧନୁ! ବିରଳ ବିଚିତ୍ର ମଣିଷ! ସଂସାର ତୋଠରେ ଘୋର ଗୃହସ୍ଥ, ଥରେ ପଘାରୁ ଫିଟିଲେ ଅବାଧ୍ୟ ଆୱାରା। ରାଗିଲେ ବଡ଼ବାଗ୍ନି, ଆନନ୍ଦରେ ହସର ଆକର୍ଣ୍ଣ ବିଜୁଳି ଛଟା ମୁଖ ମଣ୍ଡଳରେ। ସତରେ ଗୁରୁ ଗମ୍ଭୀର, ମିଛରେ ଅସଂଖ୍ୟ ତାରା ଫୁଟେଇ ଦେବେ ମଧ୍ୟାହ୍ନ ଆକାଶରେ। ବେଳେ ବେଳେ ନିଃସଙ୍ଗ ଛାପାଖାନାରେ, କମରରେ ଫଟା ଗାମୁଛା ଗୁଡ଼େଇ କମ୍ପୋଜ କରୁଥିବେ କିମ୍ବା ପାଦଚଳା ମେସିନ୍‌ରେ ଛାପୁଥିବେ ଝାଳ ଲାଳ କଳାରେ ସାଲୁବାଲୁ ହୋଇ। ସଂଧ୍ୟାରେ ସଭା ସମିତି କିମ୍ବା କବିତା ଆସରରେ ଦେଖିବ ନିଆରା ମଣିଷ। ଶାନ୍ତିପୁରୀ ଧୋତି, ଗିଲ୍‌କରା ଧୋବ ଫରଫର ଆଦି କନାର ପଞ୍ଜାବୀ। ସୂକ୍ଷ୍ମ ପ୍ରସାଧନ ମୁହଁରେ ସୁନେଲୀ ଫ୍ରେମ୍ ଚଷମା। ବୟସ ଛାଁ ଦଶବର୍ଷ ତଳକୁ ଖସିଯାଏ। ମୁଣ୍ଡରେ ବାଳ ଆଉଟିକେ ଗହଳିଆ ଥିଲେ, ମନେ ହୁଅନ୍ତେ କାର୍ତ୍ତିକେଶ୍ୱର। ବଡ଼ ମାୟାବୀ, ଭାରି ଅପ୍ରତ୍ୟୟୀ। ଭାରି ସ୍ନେହୀ ଓ ପ୍ରତିଭା ପ୍ରବଣ; କବି, ଗାଳ୍ପିକ, ଔପନ୍ୟାସିକ, ନାଟ୍ୟକାର, ବକ୍ତା-ଅଭିନେତା ଓ ଅବଶ୍ୟ ସଂଗଠକ ଲକ୍ଷ୍ମୀଧର ନାୟକ। ଭାଷା ଓ ଭାବନାରେ ଦଣ୍ଡକେ ଗଢ଼ି ତୋଳନ୍ତି ସପନ ମୀନାର। ନିମିଷକେ ଭାଙ୍ଗିଦେଇ ମୁହଁ ବୁଲେଇ ନିଅନ୍ତି ଆଉ ଆଡ଼େ। ଉଦ୍‌ଗ୍ରୀବ, ଉଦାମ ଓ ଉଦ୍‌ଭ୍ରାନ୍ତ ମଣିଷ!

ପ୍ରଥମରୁ କହିରଖେଁ। ଏହି ରଚନାରେ 'ମୁଁ' ବୋଲି ଚରିତ୍ରଟିଏ ରହିବ। ଯାହାକୁ କି ମୁଁ ଅନ୍ତରାଳରେ ରଖିବାକୁ ଚାହୁଁଥିଲି। ପ୍ରଥମରୁ ଚେଷ୍ଟା କରିଛି ମଧ୍ୟ। କିନ୍ତୁ ଲେଖା ଜମିଲା

ନାହିଁ କି ଆଗେଇଲା ନାହିଁ। ଲକ୍ଷ୍ମୀଧର ବାବୁଙ୍କ ସାହିତ୍ୟ କୃତି ଉପରେ କେବଳ ଆଲୋଚନା ହୋଇଥିଲେ 'ମୁଁ'ର ଆବଶ୍ୟକ ନ ଥିଲା। ଲକ୍ଷ୍ମୀଧର ବାବୁ, କଲଚରାଲ ଏକାଡ଼େମୀ ଓ ନବପତ୍ର ସଂପର୍କିତ ଘଟଣା ଗୁଡିକରେ 'ମୁଁ' ଯେଉଁଠାରେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ଉପସ୍ଥିତ ନାହିଁ, ସେସବୁ ବିଷୟରେ ମୋର ଜାଣତ କେବଳ ଶୁଣାକଥାରୁ। ଅଙ୍ଗନିଭା କଥାରୁ। ଅଙ୍ଗନିଭା ନୁହେଁ। ଯେତେ ଦୂର ସମ୍ଭବ ସେସବୁ କଥାଠାରୁ ଦୂରେଇ ରହିବାକୁ ଚେଷ୍ଟା କରାଯାଇଛି। ରାଉରକେଲା ମାଟିରେ ପ୍ରଥମ ସାହିତ୍ୟ ଚାଷ ଓ କଲଚରାଲ ଏକାଡ଼େମୀ ତଥା 'ନବପତ୍ର'ର ଜନ୍ମବୃତ୍ତାନ୍ତ ଏବେକୁ ଇତିହାସ ହେଲାଣି। କେହି କେହି ଉତ୍ସାହୀ ଲେଖକ ଉପର ଠଉରିଆ ଭାବେ ଦିନ ତାରିଖ ଓ ବ୍ୟକ୍ତି ବିଶେଷଙ୍କ ନାମ ଉଲ୍ଲେଖ କରି ଦେଉଛନ୍ତି। ଯାହାକି ବାସ୍ତବର ଅପଳାପ। ଅସଲ ମୂଳ ମଣିଷ ବା କର୍ମୀମାନଙ୍କ ପାଇଁ ଏହା କେତେ ପୀଡ଼ା ଦାୟକ ସେମାନେ କଳ୍ପନା କରିପାରିବେ ନାହିଁ। ତେଣୁ ଏହି ଲେଖାରେ ଯେତେଦୂର ସମ୍ଭବ ବାସ୍ତବକୁ ପ୍ରତିପାଦିତ କରିବାକୁ ଚେଷ୍ଟା କରାଯାଇଛି। ଏକ ପ୍ରକାର ଇତିହାସ ଯେତେବେଳେ,ମିଠା କଡ଼ା କଥା କିଛି କିଛି ରହିବ। ଏହା ଉଦ୍ଦେଶ୍ୟ ପ୍ରଣୋଦିତ ନୁହେଁ, ବରଂ ସତ୍ୟର ଅନୁଶୀଳନ।

ନାଁ ସହିତ ପରିଚିତ ଥିଲି ପୂର୍ବରୁ। 'ଭୁଲିଲ ସତେ ସଖୀ' ଉପନ୍ୟାସ, 'ଜମିଦାର' ଓ 'ଲାଲ ଚାବୁକ' ନାଟକ ପଢ଼ିଥିଲି ହାଇସ୍କୁଲ ବୟସରେ। ରାଉରକେଲାରେ ପ୍ରଥମ ସାକ୍ଷାତ ୧୯୬୧ ମସିହାରେ। ବୋଧହୁଏ ଜୁଲାଇ କି ଅଗଷ୍ଟ ମାସରେ। କଲଚରାଲ ଏକାଡ଼େମୀ ସେତେବେଳେ ସମୟ ପେଟରେ ଛଟପଟ ହେଉଛି, ଆଲୁଅ ଦେଖିବ ବୋଲି। 'ଶିଳ୍ପୀ' ଗର୍ଭରେ 'ନବପତ୍ର' ବୀଜ ଧାରଣ ଅପେକ୍ଷାରେ। ସେ ସମୟରେ ରାଉରକେଲା ଏକ ସଂପୂର୍ଣ୍ଣ ନୂଆ ସଭ୍ୟତାର ସହର। ବିଶେଷତଃ ଇସ୍‌ପାତ ନଗରୀ। ଆଦିମ ଅନ୍ଧାରୀ ଜୀବନ ଓ ଗୋ-ଭୂମି ସଂପଦ ସର୍ବସ୍ୱ ସଂସ୍କାର ସମଷ୍ଟି ଉପରେ, ଭାରି ଯନ୍ତ୍ରଶିଳ୍ପ ଜନିତ ଶ୍ରମ-ସଂସ୍କୃତିର ପ୍ରଥମ ଉଷା କିରଣ ରାଉରକେଲାକୁ ଚମକାଉଥିଲା। ଓଡ଼ିଶାରେ ସହର ଥିଲା ଅନେକ କିନ୍ତୁ ଜୀବନଧାରା ମୋଟାମୋଟି ଗ୍ରାମ୍ୟ ଓ ଗତାନୁଗତିକ। ଭାରି ଶିଳ୍ପ ସଭ୍ୟତାର ପ୍ରଥମ ସଂଦେଶ ହେଲା 'ଶ୍ରମ ମର୍ଯ୍ୟାଦା' ଏବଂ ସାର୍ବଜନୀନ ମର୍ଯ୍ୟାଦା। ରାଉରକେଲାର ସର୍ବଭାରତୀୟ ସଂସ୍ଥାପନ ଓ ବିଦେଶୀ ମଣିଷଙ୍କ ଆତଯାତ ଫଳ ସରୂପ, ନିକୋଛ ଗ୍ରାମୀଣ ବିଚାରବୋଧ, ଆଚାର ଆକଳନ ଏବଂ ରୁଚି ନୀତିକୁ ନୂତନ ବୋଧନରେ ଅଭିଷିକ୍ତ କରିଦେଉଥିଲା। ଯାହାକୁ କହନ୍ତି 'ପଙ୍ଗୁ ଲଂଘୟତେ ଗିରି'। ଏଠାରେ ବାମନ ଚନ୍ଦ୍ରକୁ ହାତ ବଢ଼ାଇବାର ସାହାସ ଉପହାସ୍ୟ ହୁଏ ନାହିଁ। ବରଂ ଉତ୍ସାହିତ ହୁଏ।

ସେହିପରି କିଛି ବାମନ ସୌଭାଗ୍ୟ କ୍ରମେ ଏକାଠି ହୋଇଥିଲେ ଗୋଟିଏ

କର୍ମକ୍ଷେତ୍ରରେ। କ୍ଷେତ୍ର ହେଲା, ଇସ୍‌ପାତ ନଗରୀ, ସେକ୍ଟର-୫ ଆରମ୍ଭ ସ୍ଥଳିରେ ଥିବା ଚିଫ୍ ଇଞ୍ଜିନିୟର (ଟାଉନ)ଙ୍କ ସଦର ଦପ୍ତର। ଏବେ ତାହା ଟାଉନ ଇଂଜିନିୟରିଂ ଅଫିସ୍‌ରେ ପରିଣତ ହୋଇଛି। ଏହି ଠାରେ ବିଭିନ୍ନ ଅଫିସରେ ଚାକିରି କରୁଥିଲେ ଗୋକୁଳ କିଶୋର ଦାସ, ହରେକୃଷ୍ଣ ଦାସ, ବାଣୀପଦ ଦାଶ, ବ୍ରଜ ପ୍ରଧାନ, ପ୍ରମୋଦ ଚନ୍ଦ୍ର ମହାନ୍ତି ଓ ବିକ୍ରମ ସର। ଏମାନେ ସମସ୍ତେ ମଧ୍ୟ ପାଖାପାଖି ରହୁଥିଲେ ସେକ୍ଟର-୪ରେ। ପ୍ରାୟତଃ ସମସ୍ତେ ଥିଲେ ସଂଗୀତ ଓ ନାଟକ ଅନୁରାଗୀ। ଫଳରେ ସେମାନଙ୍କ ମଧ୍ୟରେ ଏକ ସହଜିଆ-ମେଳ ଥିଲା। ୧୯୬୦ ମସିହା ଶେଷ ଆଡ଼କୁ ମୁଁ ଯାଇ ଚାକିରିରେ ଯୋଗ ଦେଲି ସେହିଠାରେ, ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟର (କନଷ୍ଟ୍ରକସନ୍)ଙ୍କ ଅଫିସରେ। ବିକ୍ରମ ସର ଥିଲେ ସେହି ଅଫିସରେ। ସେ ମତେ ତାଙ୍କ ବନ୍ଧୁ ମେଳରେ ସାମିଲ କରାଇଦେଲେ। ବୟସରେ ମୁଁ ଥିଲି ସର୍ବ କନିଷ୍ଠ। ସଂକୋଚ କାଟି ଏକାକାର ହେବାକୁ ମତେ ସମୟ ଲାଗିଲା ଅବଶ୍ୟ, କିନ୍ତୁ ଧୀରେ ଧୀରେ ମୁଁ ସମସ୍ତଙ୍କର ଶ୍ରଦ୍ଧା ଭାଜନ ହୋଇଗଲି।

ଆମ ଅଫିସ୍ ପରିସରରେ ଗୋଟାଏ ବଡ଼ କ୍ୟାଣ୍ଟିନ୍ ଚାଲୁଥିଲା। ପଣ୍ଡା କ୍ୟାଣ୍ଟିନ୍! ବିଶେଷ ଭାବେ ଟେକ୍‌ନିକାଲ ଶିକ୍ଷାନବୀଶମାନଙ୍କ ଚାହିଦା ମେଣ୍ଟାଇବା ପାଇଁ ଖୋଲା ଯାଇଥିଲା। ଚା'ପାନ ଆଳରେ ଦିନରେ ଅନ୍ତତଃ ଦୁଇ ତିନିଥର ଆମେ ସେଠାରେ ଯୁଟୁ। ଚା'ସିଂଗଡ଼ା ବାହାନରେ ଆଡ୍ଡାମାରୁ। ମଝିରେ ମଝିରେ ଆସି ଯୁଟନ୍ତି ବଂଶୀଧର ମହାପାତ୍ର। ସେତେବେଳେ ସେ ପ୍ଲାଣ୍ଟ ଭିତରେ କାମ କରୁଥାନ୍ତି, ରହୁଥାନ୍ତି ସେଇ ସେକ୍ଟର-୪ରେ। ଗୀତ, ସଂଗୀତ ନୃତ୍ୟ, ନାଟକ ଓ ରାଜନୀତି ସଂପର୍କିତ ଆଲୋଚନା ଚାଲେ। ବାଣୀପଦ ବାବୁ ଓ ତାଙ୍କର ସବୁ ଭାଇ ଭଉଣୀ ଥିଲେ ଏସ୍‌ୟୁସି ପାର୍ଟିର ସମର୍ଥକ ଓ ସଭ୍ୟ। ତେଣୁ ତାଙ୍କ ଉପସ୍ଥିତିରେ ସବୁ ଆଲୋଚନାର ପରିଣତି, ସମାଜ ବ୍ୟବସ୍ଥା ଓ ରାଜନୈତିକ ମୂଲ୍ୟବୋଧକୁ ଗଡ଼ିଆସେ। ଏହିପରି ଆଡ୍ଡା ଆସରରେ କେମିତି କେଜାଣି ସାହିତ୍ୟ କଥା ଉଠିଲା। ଏହା ୧୯୬୧ ମସିହାର କଥା, ୬୦ ନୁହେଁ। ସାହିତ୍ୟ ପ୍ରତି ଆମମାନଙ୍କର ଅନୁରାଗ ଥିଲା। ବିଶେଷ ଭାବେ ହରିବାବୁ, ବ୍ରଜବାବୁ ବାଣୀପଦ ବାବୁ ଓ ମୋର। ଗୋକୁଳି ବାବୁ ସଂଗୀତ, ପ୍ରିୟ, ବିକ୍ରମ ବାବୁ ଚିତ୍ର ଶିଳ୍ପୀ ଏବଂ ପ୍ରମୋଦ ମହାନ୍ତି ବେହେଲା ବାଦନ ସହିତ ନାଟକର ନେପଥ୍ୟ ସୂତ୍ରଧର। ରୁଚି ବିଭିନ୍ନତା ସତ୍ତ୍ୱେ, ରାଉରକେଲାରେ ଓଡ଼ିଆ ଭାଷା ଭାରତୀର ଶୁଭାଗମନ ପାଇଁ ସମସ୍ତେ ଭାଗୀରଥ ସାଜିଲେ। ଆରମ୍ଭ ହେଲା ରବିବାରିଆ 'ସାହିତ୍ୟ ଚକ୍ର' ଆତ୍ମପ୍ରକାଶର ଭିତ୍ତିଭୂମି। ଲେଖା ଲେଖିରେ ଆମେ ସମସ୍ତେ ଥିଲୁ ଅମଣିଆ। କିନ୍ତୁ ଏକାବେଳେକେ ନଭିଶ୍ ନ ଥିଲୁ। ପ୍ରତି ରବିବାର ଅପରାହ୍ଣରେ ଜଣ ଜଣଙ୍କ ଘରେ ସାହିତ୍ୟ

ଆସର ବସେ। ଗଳ୍ପ,କବିତା, ପ୍ରବନ୍ଧ ଓ ରମ୍ୟରଚନା ପ୍ରଭୃତି ପାଠ ଆଲୋଚନା ହୁଏ। ଉପସ୍ଥିତ ସମସ୍ତେ ନିଜ ନିଜର ମତବ୍ୟକ୍ତ କରନ୍ତି। ଦେଖାଦେଖି କୁମୁଦ ଚନ୍ଦ୍ର ପାଣି ବିଶ୍ୱନାଥ ବଳ ଓ ଅଲେଖ ଚନ୍ଦ୍ର ମହାନ୍ତି ପ୍ରଭୃତି ଆଉ କେତେ ଜଣ ଆସି ସାମିଲ୍ ହେଲେ। ଆସର ବେଶ୍ ଜମେ। ସବୁ ପଠନର ଆଲୋଚନା ଆରମ୍ଭ କରନ୍ତି ବାଣୀପଦ ବାବୁ ଏବଂ ସମାଲୋଚନା କରନ୍ତି ନିର୍ମମ ଭାବରେ। ତାଙ୍କ ସମାଲୋଚନାର ଶୀକାର ହୋଇ କେତେଜଣ ଲେଖାଲେଖି କଥା ସବୁଦିନ ପାଇଁ ମନରୁ ପାଶୋରି ଦେଇଛନ୍ତି।

ପ୍ରାୟ ଦୁଇମାସ ସାହିତ୍ୟଚକ୍ର ଚାଲିବା ପରେ ଆମର ସାହାସ ବଢ଼ିଗଲା। ବିଚାରହେଲା ଆମେ ଯାହାସବୁ ଲେଖୁଛୁ ତାର ପ୍ରସାର ହେବ କିପରି। ନୂଆ ଲେଖାଳିଙ୍କ ଲେଖାକୁ କେଉଁ ପତ୍ର ପତ୍ରିକା ବା ପଠନ ଦେବ। ଆମର ଗୋଟିଏ ଘରୋଇ ପତ୍ରିକା ବାହାର କରିବାକୁ ମସୁଧା ଚାଲିଲା। ପ୍ରେସ୍‌ରେ ଛାପିବାର ସମ୍ବଳ ନାହିଁ। ତେଣୁ ବନ୍ଧୁ ବିଚାର ବିମର୍ଶ ପରେ ଠିକ୍ ହେଲା, ହାତ ଲେଖା ସାଇକ୍ଲୋଷ୍ଟାଇଲ ପତ୍ରିକା ହେବ। ତିରିଶରୁ ଚାଳିଶ ପୃଷ୍ଠା ମଧ୍ୟରେ, ଅନ୍ୟୁନ ୧୦୦ ଖଣ୍ଡ କପି ବାହାରିବ। ଏଥିପାଇଁ ମଧ୍ୟ ପ୍ରଚୁର ଲିଥୋ ପେପର, କାଗଜ ଓ କାଳି ଆବଶ୍ୟକ। ଚିଫ୍ ଇଞ୍ଜିନିୟର ଅଫିସ ପରିସରରେ ଇଷ୍ଟେଟ ଅଫିସ୍ ସମେତ ପ୍ରାୟ ଛ'ସାତଟି ଅଫିସ୍ ଥିଲା। ଅଧିକାଂଶ ଅଫିସରେ ସାଇକ୍ଲୋଷ୍ଟାଇଲ ମେସିନ୍ ଥିଲା। ସବୁଠି ଗୁହାରି ଜଣାଇ ଆମେ ଆଶ୍ୱାସନା ପାଇଲୁଁ। ଇଷ୍ଟେଟ୍ ଅଫିସ୍‌ରେ ଥିଲା ଗୋଟାଏ ବଡ଼ ସ୍ୱୟଂଚାଳିତ ସାଇକ୍ଲୋଷ୍ଟାଇଲ ମେସିନ୍। ଆମର ଆଖିଥିଲା ସେଇଠି। ସ୍ୱର୍ଗୀୟ ରାସ ବିହାରୀ ସିଂହଦେଓ ଇଷ୍ଟେଟ ଅଫିସରେ ସିନିଅର ଆସିଷ୍ଟାଣ୍ଟ ଥାଆନ୍ତି। ସଂଗୀତ ନୃତ୍ୟ ଗୀତ ସଂଗଠନରେ ତାଙ୍କର ନାଁ ଥିଲା। ବଡ଼ ବଡ଼ ଅଫିସରଙ୍କ ଝିଅମାନେ ନାଚ ଗୀତ ଶିଖୁଥିବା ଅନୁଷ୍ଠାନ 'କଲଚରାଲ ଆସୋସିଏସନ୍'ର ସେ ଥିଲେ ମୁଖ୍ୟ ସଂଚାଳକ। ଗୋକୁଳି ବାବୁ, ହରିବାବୁ ଓ ବିକ୍ରମବାବୁଙ୍କ ସହିତ ତାଙ୍କର ଶ୍ରଦ୍ଧାଭାବ ଥିଲା। ସେତେବେଳକୁ ମତେ ସେ ଚିହ୍ନି ନ ଥିଲେ। ଯା' ହେଉ ମେଳି ହୋଇ ତାଙ୍କୁ ଅଫିସ୍‌ରେ ଦେଖାକଲୁଁ। ସେ ଖୁସି ହୋଇ ଆମକୁ ଚା' ପେଇଲେ ଓ ସବୁପ୍ରକାର ସାହାଯ୍ୟ କରିବାକୁ ଭରସା ଦେଲେ। ତାଙ୍କରି କଥାରେ ପତ୍ରିକାର ନାଁ ହେଲା 'ଶିଞ୍ଜୀ'। ହରିବାବୁ ଏତେ ବିଗଳିତ ହୋଇଗଲେ ଯେ କାହାରି ମତାମତ ନ ନେଇ ସେଇଠାରେ ପ୍ରସ୍ତାବ ଦେଇଦେଲେ, ଶିଞ୍ଜୀର ସଂପାଦକ ହେବେ ରାସ ବିହାରୀ ସିଂହ ଦେଓ। ଭିତରେ ଭିତରେ ଆମେ କେତେଜଣ କ୍ଷୁଣ୍ଣ ହେଲେ ବି ଆଉ କିଛି ଉପାୟ ନଥିଲା।

ପ୍ରାୟ ଦୁଇମାସ ବ୍ୟବଧାନରେ ଶିଞ୍ଜୀର ପରପର ଦୁଇଟି ସଂଖ୍ୟା ବାହାରିଲା। ସିଂହଦେଓ ବାବୁ କେବଳ ନାଁକୁ ସଂପାଦକ। ସବୁ କାମ ଆମେ କେତେଜଣ କରୁଥିଲୁଁ।

ସବିନୟ ନିବେଦନରେ କାଳି କାଗଜ ଷ୍ଟେନସିଲ୍ ପେପର ଯୋଗାଡ଼ ହେଉଥିଲା । ଲେଖା ଗୁଡ଼ିକ ଷ୍ଟେନସିଲ୍ କାଟି ଲେଖୁଥିଲେ ପ୍ରମୋଦ ଚନ୍ଦ୍ର ମହାନ୍ତି । ତାଙ୍କର ଭାରି ସୁନ୍ଦର ହସ୍ତାକ୍ଷର ଏବଂ ସହଜ ପାଠ୍ୟ । ବିକ୍ରମ ବାବୁ ପ୍ରଚ୍ଛଦ ଡିଜାଇନ୍ ଅଙ୍ଗସଜା ଓ ଛପାଛପି କାମ କରୁଥିଲେ । ପ୍ରଥମ ସଂଖ୍ୟା ପ୍ରଚ୍ଛଦରେ ଆମେ ଶୃଙ୍ଖଳା ରଂଗ ଘଷି ରଂଗୀନ କରି ଦେଇଥିଲୁ । ସାହିତ୍ୟ ପ୍ରତି ବିଶେଷ ଆଗ୍ରହ ନଥିବା ଗୋକୁଳି ବାବୁ କିନ୍ତୁ ସବୁ କାମରେ ଆମ ସହିତ ଛାଇପରି ଥିଲେ । ଅଧିକାଂଶ ସମୟରେ ଜଳପାନରେ ଆପ୍ୟାୟିତ କରିବା ସହିତ ସଂଗସୁଖ ଦାନ କରିବାରେ ତାଙ୍କପରି ବନ୍ଧୁ ବିରଳ । ରାଉରକେଲାରେ ପ୍ରଥମ ସାହିତ୍ୟ ସଂଗଠନ ପାଇଁ ତାଙ୍କର ଅବଦାନ ଅବିସ୍ମରଣୀୟ ।

ରାଉରକେଲା ସାଂସ୍କୃତିକ ମଣ୍ଡଳରେ 'ଶିଖା' ହଲ୍‌ଚଲ ସୃଷ୍ଟି କଲା । ଖବର କାଗଜ ଓ ବିଶିଷ୍ଟ ଲୋକମାନଙ୍କୁ କପି ଦିଆଯାଉଥିଲା । ସେତେବେଳକୁ ଲକ୍ଷ୍ମୀଧର ନାୟକ ପୁରୁଣା ରାଉରକେଲାରେ, ଡେଲି ମାର୍କେଟଠାରେ 'ହିନ୍ଦୁସ୍ଥାନ ପ୍ରିଣ୍ଟର୍ସ' ନାମକ ପ୍ରେସ୍ ଖୋଲି ଓ ରଜନୀକାନ୍ତ ଦାସ ପ୍ରଜାତନ୍ତ୍ରର ପ୍ରତିନିଧି ଭାବେ ଆସ୍ଥାନ ପାତିଥାନ୍ତି ଉଦିତନଗର ଓରାମ ପଡ଼ାରେ । ୧୯୫୪-୫୫ ଠାରୁ ଏ ଦୁଇ ଜଣଙ୍କ ସହିତ ହରିବାବୁ ଓ ବଂଶୀ ବାବୁଙ୍କର ମିଳାମିଶା ଥିଲା । ସେତେବେଳେ ସମସ୍ତେ ଏକ ଅଞ୍ଚଳରେ ରହୁଥିଲେ ଓ ନାଟକାଦି କରି ଘନିଷ୍ଠ ହୋଇଥିଲେ । ଆମ ଭିତରୁ ଆଉ କିଏ କିମିତି ଜାଣିଥିବେ ହୁଏତ, ମୁଁ କିନ୍ତୁ ସେମାନଙ୍କୁ ପୂର୍ବରୁ କେବେ ଦେଖିନଥିଲି । 'ଶିଖା'ର କପି ହରିବାବୁ ତାଙ୍କୁ ଦେଇଥିଲେ । ଶିଖାର ଦ୍ୱିତୀୟ ସଂଖ୍ୟା ବାହାରିଯିବାର କିଛିଦିନ ପରେ, ଦିନେ ପଣ୍ଡା କ୍ୟାଣ୍ଟିନ୍ ଆସରରେ ହରିବାବୁ ଘୋଷଣା କଲେ, ଲକ୍ଷ୍ମୀଧର ବାବୁ ଓ ରଜନୀବାବୁ ଶିଖା ଦେଖି ମୁଗ୍ଧ ହୋଇଛନ୍ତି । ଆମ ସାହିତ୍ୟ ଚକ୍ର ପ୍ରତି ମଧ୍ୟ ଭାରି ଆଗ୍ରହ । ଆସନ୍ତା ରବିବାର ଆସରକୁ ସେମାନେ ଆସିବାକୁ କହିଛନ୍ତି । ଏଥିରେ ଆପତ୍ତି କରିବାର କିଛି ନଥିଲା । ଦୁଇଜଣ ପ୍ରତିଷ୍ଠିତ ସାହିତ୍ୟିକ ବଳେ ବଳେ ଆମ ପାଖକୁ ଆସିବେ, ଏ ତ ଖୁସିର କଥା । ସାହିତ୍ୟ ଚକ୍ରର ଆକାର କ୍ରମଶଃ ବଢ଼ିବାରେ ଲାଗିଥାଏ । ଶିଖା ପ୍ରକାଶରେ ଉତ୍ସାହିତ ହୋଇ ମହେଶ୍ୱର ପଣ୍ଡା, ଭୂପେନ୍ ମହାପାତ୍ର, ବଂଶୀଧର ଦଳାଇ, କୃଷ୍ଣଚନ୍ଦ୍ର ମିଶ୍ର, ଶିବରାମ ମହାପାତ୍ର ଓ ବୟୋଜ୍ୟେଷ୍ଠ ନୀଳକଣ୍ଠ ଦାଶ ପ୍ରଭୃତି ଆସି ଯୋଗ ଦେଇଥାନ୍ତି । ଅମାୟ ବସୁ ଓ ଶ୍ରୀଧର ମିଶ୍ର ଆସି ମିଶିଲେ ବହୁତ ପରେ । ସମସ୍ତଙ୍କୁ ଖବର ଦିଆଗଲା । ସେଦିନ କିଏ କ'ଣ ପଢ଼ିବ ତାର ତାଲିକା ହେଲା । ମୋର କବିତା ପାଠ କରିବାକୁ ଇଚ୍ଛା ଥିଲା । ସଂଖ୍ୟା ବେଶୀ ହେବାରୁ ମୋ ଉପରେ ପଡ଼ିଲା ଗଳ୍ପର ବରାଦ ।

ସେକ୍ଟର-୧୮ ସ୍ଥିତ କଲଚରାଲ ଆସୋସିଏସନ ଘରେ ସାହିତ୍ୟ ଚକ୍ର ଅନୁଷ୍ଠିତ

ହେଲା । ପାଠକ ଓ ଶ୍ରୋତା ମିଶାଇ ପ୍ରାୟ କୋଡ଼ିଏ ଜଣ ହେବେ । ଲକ୍ଷ୍ମୀଧର ବାବୁ ଓ ରଜନୀବାବୁ ଆସିଲେ । ଧୋତି ପଞ୍ଜାବୀ ଓ ସୁନେଲୀ ଫ୍ରେମ୍ ଚଷମାରେ ଲକ୍ଷ୍ମୀଧର ବାବୁଙ୍କର କବି କବି ମିଠାଭାବ । ରଜନୀବାବୁଙ୍କର ଫୁଲ୍‌ପ୍ୟାଣ୍ଟ ଉପରେ ହାଫ୍ ହାଓ୍ୱାନୀ ସାର୍ଟ । ସବୁ ଧଳା । ପାଦରେ ନାଲି ମୋଜା ସହିତ କଳା ଯୋତା । ଅଙ୍କ ସାର୍‌ଙ୍କ ପରି ଗମ୍ଭୀର । ଅବଶ୍ୟ ପରେ ପରେ ରଜନୀବାବୁ ସଂପୂର୍ଣ୍ଣ ଧୋତି ପଞ୍ଜାବୀକୁ ବଦଳି ଯାଇଥିଲେ । ଭାରି ଗମ୍ଭୀର ବାତାବରଣରେ ପାଠଚକ୍ର ସମାହିତ ହେଲା । ପଠିତ ସବୁ ରଚନା ଉପରେ ବିଶେଷ ଭାବେ ଲକ୍ଷ୍ମୀଧର ବାବୁ ଉଚ୍ଛ୍ୱସିତ ମନ୍ତବ୍ୟ ଦେଲେ । ପ୍ରଥମରୁ ଆମେମାନେ ସାହିତ୍ୟ ଚର୍ଚ୍ଚାକୁ ମୋଟାମୋଟି ଅବସରର ସର୍ବୋପଯୋଗର ମାଧ୍ୟମ ଭାବେ ଗ୍ରହଣ କରିଥିଲୁଁ । କ୍ରମେ ତାହା ଏକପ୍ରକାର ଅଙ୍ଗୀକୃତ ନିଶାରେ ପରିଣତ ହେବାକୁ ବସିଥିଲା । ଏହା ବନ୍ଧୁ ବାଣୀପଦ ଦାଶ, ଏସ୍.ୟୁ.ସି. ନେତା କମ୍ରେଡ଼ ଦୀପସ ଦତ୍ତ ଓ ରାଜନୀତି କ୍ଷେତ୍ରରେ ଥିବା କେତେକ ଚିନ୍ତାଶୀଳ ବ୍ୟକ୍ତିଙ୍କ ସହିତ ଆମ କେତେ ଜଣଙ୍କ ମିଳାମିଶାର ଫଳ ଶ୍ରୁତି । ଆମ ଭିତରେ ସାହିତ୍ୟ କର୍ମ ପାଇଁ ଇଚ୍ଛାଶକ୍ତି ଓ ଉଦ୍ଦୀପନା ଥିଲା । କିନ୍ତୁ ପ୍ରତିଷ୍ଠା ଓ ଭରଷା ନଥିଲା ଅନେକଙ୍କର । ଲକ୍ଷ୍ମୀଧର ନାୟକ ହେଉଛନ୍ତି ପ୍ରଥମ ବ୍ୟକ୍ତି ଯେ ସେଦିନ କେତେ ଗୁଡ଼ିଏ ନବୀନ ପ୍ରାଣକୁ ଭବିଷ୍ୟତର ସ୍ୱପ୍ନ ଦେଖାଇଥିଲେ । ସ୍ୱପ୍ନ ବୁଣିବାରେ ଓ କଳ୍ପନାରେ କୈବଲ୍ୟ କୁଞ୍ଜ ରଚନା କରିବାରେ ତାଙ୍କ ପରି ମାହିର୍ ଲୋକ ମୁଁ ଦେଖିନାହିଁ । ବିଶେଷ ସାହିତ୍ୟ ଚକ୍ର ପାଇଁ ରାତି ଅନିଦ୍ରା ହୋଇ 'ଡାକବଙ୍ଗଳାର ଗୋଲାପ' ବୋଲି ଗପଟିଏ ଲେଖିଥିଲି । ଡରି ଡରି ପଢ଼ିଲି । ମନ୍ତବ୍ୟ ଦେବାବେଳେ ଲକ୍ଷ୍ମୀଧର ବାବୁ କହିଲେ, ଭାରି ଭଲ ଲେଖୁଛ । ତୁମର ହାତ ଅଛି । ଲେଖ..... ।' ଅନ୍ୟମାନଙ୍କ କଥା କହିବା ଉଚିତ ହେବ ନାହିଁ । ମୁଁ କିନ୍ତୁ ଅଭିମନ୍ଥିତ ହୋଇଗଲି ।

ରାସ ବିହାରୀ ସିଂଦେଓଙ୍କର ଅଭିଳାଷ ଥିଲା, ଆମର ସାହିତ୍ୟ ଚକ୍ର ଓ ଶିଳ୍ପୀ କଲଚରାଲ ଆସୋସିଏସନ୍‌ର ଶାଖା ଭାବେ କାମ କରିବ । ସେଥିପାଇଁ ସାହିତ୍ୟଚକ୍ର ଅନ୍ୟତ୍ର ନହୋଇ ଆସୋସିଏସନ୍ ଘରେ ବସୁଥିଲା । କିନ୍ତୁ ଲକ୍ଷ୍ମୀଧର ବାବୁ ଓ ରଜନୀ ବାବୁଙ୍କ ପାଇଁ ସେ ପ୍ରସ୍ତାବ ବାନ୍‌ଚାଲ ହୋଇଗଲା । ସାହିତ୍ୟ କରୁଥିବା ଲୋକମାନଙ୍କର ରାଉରକେଲାରେ ଏକ ସ୍ୱତନ୍ତ୍ର ଅନୁଷ୍ଠାନ ହେବା ନୂଆ ପ୍ରସ୍ତାବକୁ ଆମେ ଖୁସିରେ ଗ୍ରହଣ କରିନେଲୁ । ଏହି ଅନୁଷ୍ଠାନ ତରଫରୁ ଶିଳ୍ପୀ ପରିବର୍ତ୍ତେ ଏକ ନିୟମିତ ପତ୍ରିକା ପ୍ରକାଶ କରାଯିବ ବୋଲି ମଧ୍ୟ ପ୍ରସ୍ତାବ ରଖାଯାଇଥିଲା । ପରେ ଏକଥା ଜାଣି ସିଂହଦେଓ ବାବୁ ଭାରି ଖପା ହୋଇଥିଲେ । ବିଶେଷଭାବେ ହରିବାବୁଙ୍କ ଉପରେ । କଲଚରାଲ୍ ଆସୋସିଏସନ୍ ପରିବର୍ତ୍ତେ ଗୋକୁଳ ବାବୁଙ୍କ କ୍ୱାର୍ଟର୍ସରେ ମିଟିଂ ହେଲା । ନୂଆ ଅନୁଷ୍ଠାନ ପ୍ରତିଷ୍ଠା ସହିତ ଏକ ତ୍ରୈମାସିକ ସାହିତ୍ୟ

ପତ୍ରିକା ପ୍ରକାଶ କରାଯିବା ପାଇଁ ନିଷ୍ପତ୍ତି ହେଲା । ରଜନୀ ବାବୁଙ୍କ ପ୍ରସ୍ତାବ କ୍ରମେ ଅନୁଷ୍ଠାନର ନାମ ରଖାଗଲା 'କଲଚରାଲ ଏକାଡ଼େମୀ' । ସଂବିଧାନ ଖସଡ଼ା ପ୍ରସ୍ତୁତିର ଦାୟିତ୍ୱ ସେ ନେଲେ । ପତ୍ରିକାର ନାମ କ'ଣ ହେବ ? ଲକ୍ଷ୍ମୀଧର ବାବୁ କହିଲେ, ସମସ୍ତେ ଭାବ । ମୁଁ ଚିନ୍ତା କରି କହିବି ।' ମିଟିଂ ଶେଷ ହେଲା । ଲକ୍ଷ୍ମୀଧର ବାବୁ ଓ ରଜନୀବାବୁ ଟାଉନ୍ ବସରେ ଫେରିବେ ପୁରୁଣା ରାଉରକେଲାକୁ । ଆମେ ତି'ରି ଜଣ ବାଟେଇ ଦେବାକୁ ତାଙ୍କ ସହିତ ଚାଲି ଚାଲି ଗଲୁଁ ସେକ୍ଟର-୨ ସରକାରୀ ବସଷ୍ଟାଣ୍ଡ ପର୍ଯ୍ୟନ୍ତ । ବସଷ୍ଟାଣ୍ଡ ପୂର୍ବରୁ ଥିବା ରିଂରୋଡ଼ ଛକ, ଏବେ ଯେଉଁଠାରେ ବିଜୁ ପଟ୍ଟନାୟକଙ୍କ ପ୍ରତିମୂର୍ତ୍ତି ଦଣ୍ଡାୟମାନ, ହଠାତ୍ ଲକ୍ଷ୍ମୀଧର ବାବୁ ହାତ ଟେକି ଅଟକି ଗଲେ । "କହିଲେ, ହେଇଗଲା; ପତ୍ରିକାର ନାଁ କଣ ହେବ କୁହତ ?" ଆମେ ବିସ୍ମିତ ବିହ୍ୱଳ ହୋଇ ତାଙ୍କୁ ଚାହିଁଲୁଁ । ସେ ନାଟକୀୟ ଭଙ୍ଗୀରେ ବିରାମ ରଖି ଉଚ୍ଚାରଣ କଲେ, 'ନବପତ୍ର' ।

୧୯୬୨ ଅପ୍ରେଲ ମାସରେ, ଲକ୍ଷ୍ମୀଧର ବାବୁଙ୍କ ପ୍ରେସ୍ ବସାଘରେ ମଧ୍ୟାହ୍ନ ଭୋଜନ ସହିତ କଲଚରାଲ ଏକାଡ଼େମୀର ପ୍ରଥମ ଆନୁଷ୍ଠାନିକ ସାଧାରଣ ସଭା ଅନୁଷ୍ଠିତ ହେଲା । ସମ୍ବିଧାନ ଖସଡ଼ା ଅନୁମୋଦିତ କ୍ରମେ କାର୍ଯ୍ୟକାରୀ ସମିତି ଗଠନ କରାଗଲା । ଲକ୍ଷ୍ମୀଧର ବାବୁ ହେଲେ ସଭାପତି ଓ 'ନବପତ୍ର'ର ସଂପାଦକ, ମହେଶ୍ୱର ପଣ୍ଡା ଉପସଭାପତି, ରଜନୀ ବାବୁ ସାଧାରଣ ସଂପାଦକ ତଥା କୋଷାଧକ୍ଷ ଏବଂ ନବପତ୍ରର ପ୍ରକାଶକ ଓ ସହକାରୀ ସଂପାଦକ ନିର୍ବାଚିତ ହେଲେ । ଆମେ କେତେଜଣ ସହକାରୀ ସଂପାଦକ ହୋଇଥିଲୁଁ । କିନ୍ତୁ ପଦପଦବୀ ବାହାରେ ଅସଲ ବୋଝ ସବୁବେଳେ ରହିଥିଲା ମୂଳ ସାହିତ୍ୟ ଚକ୍ରର ମେଳିଆଙ୍କ ମୁଣ୍ଡରେ । ହରେକୃଷ୍ଣ ଦାସ ଥିଲେ ତାର ସୂତ୍ରଧର । ଏହି ବୈଠକରେ ସ୍ଥିର ହେଲା, 'ନବପତ୍ର'ର ପ୍ରଥମ ସଂଖ୍ୟା ଆସନ୍ତା ଜୁଲାଇ ମାସରେ ବାହାରିବ । ଲକ୍ଷ୍ମୀଧର ବାବୁ ଘୋଷଣା କଲେ, ଆମ ମାନଙ୍କ ଅନଭିଜ୍ଞ ହାତର ଲେଖାକୁ ଧରି ନବପତ୍ର ପ୍ରଥମ ଆଲୋକ ଦେଖିବ ଏବଂ ତାହା ହେବ ଓଡ଼ିଆ ସାହିତ୍ୟ ପାଇଁ ଅଭିନବ ବିସ୍ମୟ । ବଡ଼ ଲେଖକଙ୍କ ପାଖକୁ ଖାଲି ହାତରେ ଲେଖା ମାଗି ଯିବାନାହିଁ । ହାତକୁ ନବପତ୍ର ଖଣ୍ଡେ ବଢ଼ାଇ ଦେଇ ଲେଖାମାଗିଲେ ମହତ ରହିବ । ଶୁଣି ଆମେମାନେ ରୋମାଞ୍ଚିତ ହୋଇଗଲୁଁ । ପ୍ରଥମ ପ୍ରତିଶ୍ରୁତି କି ନା !

ତାଗିଦା ପାଇ ଯଥା ସମୟରେ ଆମେ ନିଜ ନିଜ ଲେଖା ଦେଇଦେଲୁଁ । ପତ୍ରିକାର ପ୍ରସାରଣ କିପରି ହେବ ତାର ଖସଡ଼ା ହେଲା । ପତ୍ରିକାର ଖର୍ଚ୍ଚ ଉଠାଇବାକୁ ବିଜ୍ଞାପନ ଓ ବିକ୍ରି ସଂପୂର୍ଣ୍ଣ ରୂପେ ରାଉରକେଲା ଉପରେ ନିର୍ଭର । ଆମେ ଭାବିଥିଲୁଁ ସହଜ କାମ । କିନ୍ତୁ ପ୍ରକୃତ ପକ୍ଷେ ଏ କାମ କେତେ ଟିଟା ଓ ଦହଗଞ୍ଜିଆ, ରାସ୍ତାକୁ ଓହ୍ଲାଇଲା ପରେ ଭୋଗାନ୍ତ ହେଲା ।

ଏବେ ବିଶ୍ୱାସ କରିହୁଏ ନାହିଁ । ଏପରି କାର୍ଯ୍ୟ ଦିନେ ଆମ ଦ୍ୱାରା ସାଧିତ ହୋଇଥିଲା । ପ୍ରାୟ ପ୍ରତିଦିନ ସଂଧ୍ୟାରେ ଓ ରବିବାର ସକାଳ ଓଳି ଆମେ ହିନ୍ଦୁସ୍ଥାନ ପ୍ରିଣ୍ଟର୍ସରେ ହାଜିରା ହେଉଁ । ପ୍ରେସ୍ ଅଫିସ୍‌ରେ ପଡ଼ିଥିବା ବିରାଟ ଟେବୁଲକୁ ଘେରି ବସୁଁ । କଣ୍ଠା ହାତରେ ଲେଖାସବୁ ନେଇ ମଥାମଣି ଲକ୍ଷ୍ମୀଧର ବାବୁ ଗାର ଟାଣନ୍ତି । ଯା'ର ଲେଖା ତାକୁ ଦେଇ କହନ୍ତି, 'ଏଥର ପଢ଼, କେମିତି ଲାଗୁଛି । ମୁଁ ଆତଙ୍କରେ ଥାଏଁ । କେବେ ମୋ ପାଳି ପଡ଼ିବ କିମ୍ବା ମୋ ଲେଖାଟି ଅଳିଆ ଗଦାକୁ ଯିବ । ଏପରି ତ ହେଉଥାଏ । ଯେଉଁଠି ସମ୍ଭାବନା ନାହିଁ, ସେଠି ଦୟା ମାୟା ନାହିଁ ଲକ୍ଷ୍ମୀଧର ବାବୁଙ୍କରେ । ଦିନେ ପ୍ରେସ୍‌ରୁ ଫେରିଲା ବେଳକୁ ପଛରୁ ଡାକି ଲକ୍ଷ୍ମୀଧର ବାବୁ ମତେ କହିଲେ, ବିଷ୍ଣୁ, ତମେ ରବିବାର ଦିନ ସକାଳୁ ସକାଳୁ ଟିକେ ଆସିବ ତ । ମୋର ମୁହଁ କାଗଜ ପରି ସାଦା ହୋଇଗଲା କି କଣ । ଲକ୍ଷ୍ୟ କରି, ସେ ହସି ହସି କହିଲେ, ନ'ଟା ବେଳକୁ ଆସି ପାରିବ ?"

ମୁଁ ନ'ଟା ପୂର୍ବରୁ ଯାଇ ପହଞ୍ଚିଗଲି । ପ୍ରେସ୍ ଖୋଲା, କିନ୍ତୁ ଶୂନଶାନ୍ । ମୁଁ ଅପେକ୍ଷା କରି ବସି ରହିଲି । ଖବରକାଗଜ ଏପଟ ସେପଟ କରି ପ୍ରାୟ ଘଣ୍ଟାଏ ବିତିଗଲା । କାହାର ଦେଖାନାହିଁ । ଏହି ସମୟରେ ପ୍ରେସ୍ ରୁମ୍ ଭିତରୁ କ'ଣ ଗୋଟାଏ ପଡ଼ିଯିବାର ଶବ୍ଦ ଆସିଲା । ମୁଁ ଉଠି ପଡ଼ି ଉଙ୍କି ମାରିଲି । ବିଜୁଳି ନଥିବାରୁ ଭିତର ଅନ୍ଧାରୁଆ । ପ୍ରେସ୍ ଭିତର ପଟରେ ଥିବା ଛୋଟିଆ ଜଳା କବାଟ ଦେଇ ଚେନାଏ ହବ ଆଲୁଅ ଧାର ପଡ଼ିଛି । ସେଇଠି ଖାଲି ଦେହରେ, ଗୋଟାଏ ଛିଣ୍ଡା ମଇଳା ଗାମୁଛା ଅଣ୍ଟାରେ ଗୁଡାଇ ଠିଆ ଠିଆ କମ୍ପୋଜ କରୁଛନ୍ତି ନିଜେ ଲକ୍ଷ୍ମୀଧର ବାବୁ । ମୁଁ ଭିତରକୁ ପଶିଯାଇ ନମସ୍କାର କଲି । ମୋ ଆଡ଼େ ଥରଟିଏ ନଜର କରି ସେ କହିଲେ, ଡମାଟା ପଳେଇଛି । ନିମନ୍ତ୍ରଣ ପତ୍ରଟା ଗତକାଲି ଡେଲିଭରି ଦବାକଥା । ସମସ୍ତେ ଭୁଲି ଯାଇଛନ୍ତି । ଆଜି ଗୋଟାଏ ମଧ୍ୟରେ ଦବାକୁ କହିଥିଲି । କାହାରି ଦେଖା ନାହିଁ । ବସ ବସ, ସରି ଆସିଲାଣି ।

ମୁଁ ବସିରହିଲି । ପ୍ରାୟ ଅଧଘଣ୍ଟା ପରେ ଲକ୍ଷ୍ମୀଧର ବାବୁ ଆସି ତାଙ୍କ ଚେୟାରରେ ସେମିତି ଗାମୁଛା ପିନ୍ଧା ବସିଗଲେ ବ୍ରତଘର ନିମନ୍ତ୍ରଣ ପତ୍ର ପ୍ରୁଫ ଧରି । ପ୍ରୁଫ ଦେଖି ନେବା ପରେ ମୁହଁ ବିକୃତ କରି କହିଲେ, ବୁଝିଲ, ଏଗୁଡାକୁ ନେଇ ପ୍ରେସ୍ ଚଳାଇ ହେବନାହିଁ । କେଉଁ ଦିନ କ'ଣ ଡେଲିଭରି ଦିଆଯିବ ତାର ଖବର ରଖୁନାହାନ୍ତି । ଡମାଟା ଦି'ଦିନ ପାଇଁ ଟଙ୍କା ଧରି ଘରକୁ ଗଲା ଯେ ଛ'ଦିନ ଆସିହେଲା, ଦେଖାନାହିଁ । ଅବିକା ଆକୁ ମୁଁ ପ୍ରେସ୍‌ରେ ଚଢ଼େଇ ଛାପିବି । ତୁମେ ବରଂ ଉପର ଓଳି ଗ୍ୱରିଟା ପାଞ୍ଚଟା ବେଳକୁ ଆସ । ମୁଁ ଫାଙ୍କା ଥିବି । ମୁଁ ବୁଝିଗଲି ଭୁଲ୍‌ଟା ଆଉ କାହାର ନୁହେଁ, ତାଙ୍କ ନିଜର । ସେଥିରେ ତାଙ୍କ ହାତ ବାରିସି ଡମା

ନଥିବାରୁ ବେଶୀ ଗଦ୍‌ଗଦ୍ ହେଉଛି ।

ପୁଣି ଛ' କିଲୋମିଟର ସାଇକେଲ ଠେଲି ସାଢ଼େ ଚାରିଟା ବେଳକୁ ଯାଇ ପହଞ୍ଚିଲି । ମୋର ସୌଭାଗ୍ୟ, ଲକ୍ଷ୍ମୀଧର ବାବୁ ଲୁଙ୍ଗି ଖଣ୍ଡେ ପିନ୍ଧି ଖାଲି ଦେହରେ ଚୁପ୍ ଚାପ ବସିଥିଲେ । ମୁଁ ପହଞ୍ଚିଲା କ୍ଷଣି ହସିଦେଇ କହିଲେ, ଆସିଗଲ; ବସ ବସ । ଚା'ପିଇବ ? ଭିତରକୁ ଲକ୍ଷ କରି କହିଲେ, ଲି ଲି, ଦି କପ୍ ଆଣିବୁ ମା' । ତାଙ୍କ ଝିଅ ଲିଲି ଚା' ଆଣିବା ପର୍ଯ୍ୟନ୍ତ ଚୁପ୍‌ଚାପ୍ ବସି ରହିବାକୁ ହେଲା । ମୋର ଉତ୍କଣ୍ଠା ବଢ଼ିବଢ଼ି ଚାଲିଥାଏ । ଶେଷରେ ଚା'ପିଆ ସରିବା ପରେ ସିଗାରେଟ୍ ଧରାଇ ସେ ଟେବୁଲ ଡ୍ରୟାର ଖୋଲି ନବପତ୍ର ଫାଇଲ୍ ବାହାର କଲେ । ସେଥିରୁ ମୋ ଗଳ୍ପଟିକୁ ହାତରେ ଧରି ହସିଲେ । 'ଡାକବଙ୍ଗଳାର ଗୋଲାପ, ବଢ଼ିଆ ନାଁ ରଖିଚ । ଥାକେ ପ୍ରେସ୍ ଗିଜେକ୍ସ କାଗଜ ମୋ ଆଡ଼େ ବଢ଼ାଇଦେଇ କହିଲେ, ନିଅ ଲେଖ । ମୋ ପାଣ୍ଡୁଲିପି ଉପରେ ଆଖିରଖି ସେ ଡାକିଗଲେ । ମୁଁ ଲେଖି ଯାଉଥାଏ ବାଧ୍ୟ ପରୀକ୍ଷାର୍ଥୀ ପରି । ମଝିରେ ମଝିରେ କ'ଣ ଲେଖିଲ, ଆଗଧାଡ଼ିଟା ପଢ଼ିଲ ବୋଲି ଯା ବିରାମ । ପ୍ରାୟ ଚାଳିଶ ପଇଁଚାଳିଶ ମିନିଟ୍ ମଧ୍ୟରେ ସରିଗଲା । ନୂଆ ପାଣ୍ଡୁଲିପିକୁ ମୁଁ ପଢ଼ି ଶୁଣାଇଲି । ଟେବୁଲପିଟି ସେ କହିଲେ, ଏବେ କିମିତି ହେଲା ? ନୂଆ କଳେବର, କିନ୍ତୁ ତୁମ କଥା ଭାଷା କିଛି ବଦଳି ନାହିଁ । କେବଳ ବାଗ ବଚଣରେ ଟିକେ ହେର୍ ଫେର । ଏହି ହେର୍ ଫେର୍ ହେଲା ଲେଖକୀୟ ଛଟା । ତୁମେ ଗଳ୍ପ ଲେଖ, ତୁମର ହବ ।'

ମୋ ଦେଇ କେତେ ହେଲା, କେତେ ହେଲା ନାହିଁ କହି ପାରିବି ନାହିଁ । ବାଉଁଶ ସିଧା ହେଲେ ସେଥିରେ ଯେ ପତାକା ଉଡ଼ିବ ତାର କିଛି ଠିକଣା ନାହିଁ । କିନ୍ତୁ ସତକଥା ହେଲା, ଲକ୍ଷ୍ମୀଧର ବାବୁଙ୍କ ଜୀବନ ଦର୍ଶନରେ ମୁଁ ଅନୁପ୍ରାଣିତ ନହୋଇ ଥିଲେ ମଧ୍ୟ, ତାଙ୍କ ସ୍ନେହାଶୀର୍ବାଦ ମୋ ପାଇଁ ଥିଲା ପ୍ରଥମ ପ୍ରେରଣା । ସବୁଠାରୁ ବଡ଼ କଥା ହେଲା, ସାହିତ୍ୟ ଚକ୍ର ପ୍ରାରମ୍ଭ କାଳରୁ ଆମେ କେତେ ଜଣ ମାର୍କସବାଦୀ ଦର୍ଶନକୁ ଆଦର୍ଶ ଭାବେ ଗ୍ରହଣ କରି ନେଇଥିଲୁଁ । ସେଥିପାଇଁ ଈର୍ଷା ପ୍ରଣୋଦିତ କେହି କେହି କଲଚରାଲ ଏକାଡେମୀକୁ କମ୍ୟୁନିଷ୍ଟ ଅନୁଷ୍ଠାନ ବୋଲି ବୃଥା ଅପବାଦ ରଚନା କରିଥିଲେ । କିନ୍ତୁ ଲକ୍ଷ୍ମୀଧର ବାବୁ କି ରଜନୀ ବାବୁ କେବେ ହେଲେ ପ୍ରଶ୍ନ ଉଠାଇ ନାହାନ୍ତି । ବରଂ ଉତ୍ସାହିତ କରିଛନ୍ତି ଆମର ଆଗ୍ରହ ପଣକୁ । ସେହିପରି ଭିନ୍ନ ମତବାଦର ଆଉ ଦୁଇଜଣ ପ୍ରମୁଖ ଓ ପ୍ରବୀଣ ବ୍ୟକ୍ତି ଥିଲେ ଆମର ଶୁଭେଚ୍ଛୁ ଏବଂ ପ୍ରଶଂସକ । ଏକ ସମୟରେ ସେମାନଙ୍କ ଚେଲା ଚାମୁଣ୍ଡାମାନେ ଆମ ବିରୁଦ୍ଧରେ ବିଷୋଦ୍‌ଗାର କରି ବୁଲୁଥିବା ବେଳେ, କଲଚରାଲ ଏକାଡେମୀ ଓ ନବପତ୍ର ପ୍ରତି ସେମାନଙ୍କ ଶ୍ରଦ୍ଧା ଓ ସାହାଯ୍ୟ ଭୁଲି ହେବ ନାହିଁ । ସେମାନେ ହେଲେ ପ୍ରଖ୍ୟାତ ଶ୍ରମିକ ନେତା ସ୍ୱର୍ଗୀୟ

ଧୂଳେଶ୍ୱର ବସ୍ତିଆ ଓ ଲକ୍ଷ୍ମୀ ନାରାୟଣ ବେହେରା। ଆଦର୍ଶଗତ ତଫାତ୍ ସତ୍ତ୍ୱେ ସେ ଦୁଇ ଜଣ ଆମର ବନ୍ଧୁ ହୋଇଯାଇଥିଲେ। କମ୍ରେଡ୍ ତାପସ ଦତ୍ତ, କମ୍ରେଡ୍ ନିତ୍ୟାନନ୍ଦ ପଣ୍ଡା ଓ ପରବର୍ତ୍ତୀ କାଳରେ କବି ମନମୋହନ ମିଶ୍ର ଥିଲେ ଆମର ଦୋସର ସଦୃଶ।

ନବପତ୍ର ପ୍ରଥମ ସଂଖ୍ୟା ପ୍ରକାଶ ପାଇଲା ୧୯୬୨ ଅଗଷ୍ଟ ଶେଷ ସପ୍ତାହରେ। ଗୋକୁଳି ବାବୁ, ହରିବାବୁ, ବାଣୀବାବୁ, ବଂଶୀ ବାବୁ ଓ ମୁଁ ପ୍ରାୟ ପ୍ରତିଦିନ ଯାଉଥିଲୁଁ ଲକ୍ଷ୍ମୀଧର ବାବୁଙ୍କ ପ୍ରେସ୍‌କୁ। ଅନ୍ୟମାନେ ମଧ୍ୟ ସୁବିଧା ସୁଯୋଗ ଦେଖି ଆସୁଥିଲେ ମଝିରେ ମଝିରେ। ନବପତ୍ର ଛାପା ଠାରୁ ସିଲେଇ ମଧ୍ୟରେ ଯେତକ ଭଙ୍ଗାଭଙ୍ଗି ସଜଡ଼ା ସଜଡ଼ି କାମ ସବୁ ଆମେ କରୁଥିଲୁଁ। ବିଜ୍ଞାପନ ସଂଗ୍ରହ ପାଇଁ ବଜାରସାରା ବୁଲୁଥିଲୁ। ସଂଧ୍ୟା ପାଞ୍ଚଟାରେ ଯାଉ, ଫେରୁ ରାତି ନ'ଟା ଦଶଟାରେ। ରବିବାର ଦିନ ମଧ୍ୟ ବିରାମ ନାହିଁ। ପ୍ରେସ୍‌କୁ ଧାଇଁବା ଆମର ଏକପ୍ରକାର ନିଶା ହୋଇଯାଇଥିଲା। ସାହିତ୍ୟ ଚକ୍ର ଆରମ୍ଭ କାଳରେ ଆମେ ଚାରି ପାଞ୍ଚ ଜଣ ସାଇକେଲ ଧରି ଚାଲି ଚାଲି ଗଲାବେଳେ, ପଛରୁ ସୁଖବାସୀ ଗୃହସ୍ଥମାନେ କହୁଥିଲେ, 'ଚାଲିଲେ ଓଥରା ଦଳ'। ଶିକ୍ଷୀ ବାହାରିବା ପରେ କହୁଥିଲେ, 'ଆସିଗଲେ ଶିକ୍ଷୀବୃନ୍ଦ'। କଲଚରାଲ ଏକାଡ଼େମୀ ହେବା ଓ ନବପତ୍ର ବାହାରିବା ପରେ ଅନେକଙ୍କର ମୁହଁ ବନ୍ଦ ହୋଇ ଯାଇଥିଲା। କେବଳ ବନ୍ଧୁ ବ୍ରଜ କିଶୋର ମହାନ୍ତି ( ଭୂତପୂର୍ବ ଏମ୍.ଏଲ୍.ଏ) ଦେଖିଲେ ଟିପ୍ପଣୀ କାଟୁଥିଲେ, 'କୁଆଡ଼େ ଆଗମନ ସାହିତ୍ୟ ଏକ ଡିମ୍ବ ?' ଆମେ ଯେତେବେଳେ ସେତେବେଳେ ଚା' ପିଉଥିଲୁଁ। ଅବେଳରେ ଖାଉଥିଲୁଁ, ବାରଆଡ଼େ ବୁଲୁଥିଲୁଁ ଅଘୋରୀ ହୋଇ। ତେଣୁ ଥିଲୁଁ, ପଡ଼ା ପଡ଼ୋଶୀ, ସହକର୍ମୀଙ୍କ ଅବିଶ୍ୱାସ ବା ବିସ୍ମୟ ଘେରରେ। ତଥାପି କିଛି କିଛି ଅନ୍ଦର ମହଲରେ ଆମପ୍ରତି ଅକୁହା ଅନୁରାଗ ଥିଲା। ଥିଲା ସଂଜବତୀ ପରି ଅନୁଜ୍ଜ୍ୱଳି ସରାଗ। ସେ ସବୁ ବିସ୍ମୃତ କଥା ସ୍ମୃତିତଟରେ ଭାସି ଉଠିଲେ, ମନେ ପଡ଼େ ଲକ୍ଷ୍ମୀଧର ନାୟକଙ୍କ କବିତା :

'ସ୍ମୃତିର ଅନେକ ଦିନ, ଖୋଜି ଖୋଜି ବୁଲେ ଜଣା-ଅଜଣାର ଛାଇ
କେବେ ପାଖେ, ସମ୍ମୁଖେ ବା ଦୃଷ୍ଟିର ଉହାଡ଼େ
ପଛରୁ କେ ଡାକେ ଅବା ଆଗେ ଆସି ଆଲିଙ୍ଗନ କରେ
ନିଶ୍ୱାସ କାହାର ବାଜେ ପ୍ରାଣେ ପ୍ରାଣେ, ଅମୃତ କୋମଳ
ବିଦ୍ୟୁତ୍ ଫସଲ ଛାଇ ଝଲସୁଚି ଚିଲିକା ହ୍ରଦରେ।'

(ପଦ୍ୟାଂଶ : କବିତା 'ଛାୟା-ଚିତ୍ର')

ଗପ ଗୁଜବ ଗମାତରେ ଓସ୍ତାଦ ଥିଲେ ଲକ୍ଷ୍ମୀଧର ବାବୁ। ଆସର ଜମିଥିଲେ ସେ ସାନ ବଡ଼ ବୟସର ସୀମା ରଖନ୍ତି ନାହିଁ। ଆମ ପରି ବେପରୁଆ ଜୀବନ ପାଇଁ ସେ ତହଳ

ବିକଳ ହୁଅନ୍ତି । କିନ୍ତୁ ନିରୁପାୟ ପକ୍ଷୀ, ଆବଦ୍ଧ ସଂସାର ପଞ୍ଜୁରୀରେ । ସେଥିପାଇଁ ଆମ ଦଳକୁ ଦିନେ ନଦେଖିଲେ ଛଟପଟ ହୁଅନ୍ତି । ପ୍ରେସ୍‌ରେ ପହଞ୍ଚିବା କ୍ଷଣି ଚ'ଟା କିମିତି ଆସିବ ହରିବାବୁ ତାର ବାଗ ଉଣ୍ଡି ବସନ୍ତି । ପ୍ରତି ଘଣ୍ଟା ଅନ୍ତରରେ କପେ କପେ ଚ'ଯୁଟିଲେ ସେ ଖୁସି ହୁଅନ୍ତି । ଅଧିକ ହେଲେ ଆପତ୍ତି ନାହିଁ । ପ୍ରତିଦିନ ଲକ୍ଷ୍ମୀଧର ବାବୁ ଆମକୁ କପେ କପେ ଚ' ଦିଅନ୍ତି । ଆମେ ବି ଚାନ୍ଦା କରି ମଗାଉ ମଝିରେ ମଝିରେ । କେବେ ମନ ଭଲ ନଥିଲେ କିମ୍ବା ବିଗିଡ଼ି ଯାଇଥିଲେ ସେ ଚ'କଥା ଭୁଲି ଯା'ନ୍ତି । ହରିବାବୁ କିନ୍ତୁ ନଛୋଡ଼ ବନ୍ଦା । ଆମେ ବିରକ୍ତ ହେବା ସତ୍ତ୍ୱେ ବାଗ ଦେଖି ଅଳି କରନ୍ତି, 'ଆଜ୍ଞା, ଚ'ଟିକେ ପି'ଥାନ୍ତୁ । ତାଙ୍କ ବିକଳ ଭାବ ଦେଖି ହସି ଦିଅନ୍ତି ଲକ୍ଷ୍ମୀଧର ବାବୁ । ଡାକ ପକାନ୍ତି, ଉମା.... ।' ପାଗ ଯୋଗ ସରସ ଥିଲେ, ଆସର ଜମାଣିଆ ହୋଇଥିଲେ, ଡବଲ ଚ' ସହିତ ମୁଢ଼ି ତେଲଭଜା ଆସେ । ଲକ୍ଷ୍ମୀଧର ବାବୁ ତାଙ୍କର ଅଦ୍ଭୁତ ଅଭିଜ୍ଞତା, କରଣୀ ଏବଂ ସାହିତ୍ୟ, ସଂଗୀତ, ନାଟକ ଓ କଲିକତାରେ ଲକ୍ଷ୍ନୌ ବନାରସୀ ଘରାନା ମୁଜାରା ନୃତ୍ୟ ଦେଖାର ରୋମାଞ୍ଚକର କାହାଣୀ ଶୁଣାନ୍ତି । ସେ ସବୁ କଥା କେତେ ବାସ୍ତବ, କେତେ କାଳ୍ପନିକ କହିବା ମୁସ୍କିଲ । ତେବେ ଆସର ଜମେ, ଗମାନ୍ତ ଗହନ ହୁଏ । ରାତି କରି ଆମେ ଘରକୁ ଫେରୁଁ ।

ନବପତ୍ରର ପ୍ରଚ୍ଛଦ ଦେଖି ଆଖି ଝଲସିଗଲା । କେବଳ ପତ୍ରରେ ପତ୍ରରେ ଅଭିନବ ରେଖାଚିତ୍ର-ସମ୍ବଳିତ ସବୁଜ ରଙ୍ଗରେ । ଲକ୍ଷ୍ମୀଧର ବାବୁ କଟକରୁ କରାଇ ଆଣିଥିଲେ । ଚିତ୍ର ଆଙ୍କିଥିଲେ ପ୍ରଖ୍ୟାତ ଶିଳ୍ପୀ ଅସୀତ୍ ମୁଖାର୍ଜୀ । ଭିତର ପୃଷ୍ଠାର ଅଳଂକରଣ କରିଥିଲେ ଆମର ବ୍ରଜ ପ୍ରଧାନ । ନବପତ୍ର, ବିଶେଷତଃ ନିଜ ଲେଖାକୁ ନିଜେ ନେଇ ଫେରି କରିବା ଥିଲା ରାଉରକେଲା ପାଇଁ ଅଭିନବ ଦୃଶ୍ୟ । ଏକାବେଳେକେ ଚାରି ପାଞ୍ଚଜଣ ବାହାରୁଁ ସଂଧ୍ୟା ପାଞ୍ଚଟାରେ । ରବିବାର ଦିନ ସକାଳ ଓଳା । ସମସ୍ତଙ୍କ ସାଇକେଲ ପଛରେ ଥାକେ ଥାକେ ପତ୍ରିକା । ଦୁଆର ଦୁଆର ବୁଲି ଚିହ୍ନା ଅଚିହ୍ନାଙ୍କୁ ନମସ୍କାର କରିବା ଓ ଆଜ୍ଞା ହଜୁର କରିବାକୁ ପ୍ରଥମେ ପ୍ରଥମେ ସଂକୋଚ ଲାଗୁଥିଲା । ଏସବୁ ମଧ୍ୟବିତ୍ତ କୁଣ୍ଠାବୋଧକୁ ପଛରେ ପକାଇ ପତ୍ରିକା ଫେରିର ନେତୃତ୍ୱ ନେଲେ ବାଣୀପଦ ଦାଶ । ଜଣେ କାହାକୁ ଧରିଲେ ମାନେ ତାର ନିସ୍ତାର ନାହିଁ । ଓଡ଼ିଆ ଲୋକଙ୍କର ପଢ଼ାପଢ଼ି ଅଭ୍ୟାସ କମ୍ । ସେଥିରେ ସାହିତ୍ୟ ପ୍ରତି ଅନୁରାଗ ଥିବା ନଥିବା ପରି । ସାହିତ୍ୟକୁ ଠାକୁର ବାଡ଼ିର ପୋଥି ମଣି ମାନ୍ୟ କରନ୍ତି କିନ୍ତୁ ମାଜଣା ନାସ୍ତି । ଆମ ଭିତରେ ଗୋକୁଳି ବାବୁ ଥିଲେ ସବୁଠାରୁ ସମ୍ପନ୍ନ ପରିବାରର ସନ୍ତାନ । କଟକ ସହରର ଖାନାଦାନୀ ଘର । ନିଜେ ଡିଭିଜନ୍ ଅଫିସ୍‌ରେ ବଡ଼ବାବୁ । ଏ କାର୍ଯ୍ୟ ତାଙ୍କର ଆଦୌ ପସନ୍ଦ ନଥିଲେ ବି ସେ ଆମ ସାଙ୍ଗ ଛାଡ଼ି ପାରନ୍ତି ନାହିଁ । ଅବଶ୍ୟ ସେ ଗୋଟିଏ ସର୍ତ୍ତ ରଖିଥିଲେ ।

ତାହା ହେଲା, ତାଙ୍କର ବିବାହ ପରେ ଆମେ ତାଙ୍କୁ ଆଉ ଟାଣିବୁ ନାହିଁ। ସେ ସର୍ତ୍ତ ଆମେ ଯଥା ସମୟରେ ପାଳନ କରିଥିଲୁଁ। ଆମ ସାଙ୍ଗରେ ଯାଇ ଯାଇ ଗୋକୁଳି ବାବୁ ଏପରି ଛାଞ୍ଚରେ ପଡିଯାଇଥିଲେ ଯେ ଯାହାକୁ ଭେଟୁଁ ସେ ଆଗତୁରା ନମସ୍କାର ଠୁକି ଦିଅନ୍ତି। ଥରେ ରାତି ଅନ୍ଧାରରେ, ତାଙ୍କ ଅଫିସ୍ ପିଅନକୁ 'ନମସ୍କାର ଆଜ୍ଞା' କହି ସେ ଅଡୁଆରେ ପଡ଼ିଗଲେ। ପିଅନ ବିଚରା କନ୍ଦାକଟା କରିବା ଉପରେ।

ଖଣ୍ଡେ ପତ୍ରିକାର ମୂଲ୍ୟ ମାତ୍ର ଟଙ୍କାଟିଏ ସେଥିରେ ନଗଦ ବିକ୍ରି ୩୦ ଭାଗ, ବାକି ୭୦ ଭାଗ। ପଢ଼ିଲା ପରେ ଆସି ନବୁଁ କିମ୍ବା ବାର୍ଷିକ ଗ୍ରାହକ କରିବୁଁ ବୋଲି ଫାନ୍ଦ ପକେଇ ଆସୁଁ। ପରବର୍ତ୍ତୀ ସଂଖ୍ୟାରେ ଯାଇ ଦେଖିଲା ବେଳକୁ ଅଧାଅଧି ଚଢ଼େଇ ଫାନ୍ଦ କାଟି ଉଡଣଛୁ। କବାଟ କିଳା ନାରୀ କଣ୍ଠରୁ ଶୁଭେ, ବାବୁ ନାହାନ୍ତି। କହିଯାଇଛନ୍ତି, ଆମର ସେ ବହି ଦରକାର ନାହିଁ। କାଲି ଆସ, ଆର ମାସ ଆସ ହୋଇ ଅଧାଅଧି ବାକି ବୁଡ଼ିଛି। ଗୋଟାଏ ଘରକୁ ପାଞ୍ଚ ସାତ ଥର ଦୌଡ଼ି ନିରାଶ ହେବା ପରେ ଆଉ ଉରା କଣ! ତଥାପି ମରୁବାଲିରେ ଖଜୁରୀ ଗଛ ପରି ଜଣେ ଜଣଙ୍କ ଠାରୁ ଆଦର ଅଭ୍ୟର୍ଥନା ମଧ୍ୟ ମିଳେ। ଚ' ବିସ୍କୁଟ ଖାତିର ଯୁଟେ। ଏପରି ସ୍ଥଳେ, କାଙ୍ଗାଳ ପଣରେ ଆମେ ସେହିଠାରେ ସଂଧ୍ୟାଟା ବିତାଇ ଦେଇ ଆନନ୍ଦ ମନରେ ଫେରୁଁ। ମନେ ପଡୁଛି, ଷ୍ଟିଲ୍ ପ୍ଲାଣ୍ଟର ଜଣେ ବଡ଼ ଓଡ଼ିଆ ଇଂଜିନିୟର ଆମ ଠାରୁ ନବପତ୍ର ନେଇ ତାଙ୍କ ସ୍ତ୍ରୀଙ୍କ ହାତକୁ ବଢ଼ାଇ ଦେଇ ଟଙ୍କାଟିଏ ଆଣିଦେବାକୁ ଇଂରାଜୀରେ କହିଲେ। ତାଙ୍କର ଆଠ ନ'ବର୍ଷର ପୁଅ ସେଠାରେ ଉପସ୍ଥିତ ଥିଲା। କାଳେ ସେ ଓଡ଼ିଆ ଶିଖିଯିବ, ସେଇ ଭୟରେ ମେମ୍ ସାହେବ ପତ୍ରିକାଟି ଆମକୁ ଫେରାଇ ଦେଇ ଆବଶ୍ୟକ ନାହିଁ ବୋଲି କହିଲେ। ଇଂରାଜୀରେ ଅବଶ୍ୟ। ଆଶ୍ଚର୍ଯ୍ୟ କଥା, ସେହି ଭଦ୍ରମହିଳାଙ୍କ ଓଡ଼ିଆ କବିତା ପଢ଼ିବାକୁ ମିଳିଲା ବଂଶୀଧର ମହାପାତ୍ରଙ୍କ ସଂକଳିତ କବିତା ପୁସ୍ତକ 'ଚଇତାଳି'ରେ ୧୯୬୯ରେ।

ଆମ କୁଚ୍ଛ୍ର ସାଧନାର ପ୍ରଗତି ବୃତ୍ତାନ୍ତ ଶୁଣି ଲକ୍ଷ୍ମୀଧର ବାବୁ ପ୍ରାଣ ଖୋଲି ହସନ୍ତି ଏବଂ ସଂଗେ ସଂଗେ ଗମ୍ଭୀର ହୋଇଯା'ନ୍ତି। କହନ୍ତି, 'ତୁମେମାନେ ପାରିବ। ସାହିତ୍ୟର ବର୍ଷଣ ଧାରାକୁ ରାଉରକେଲାର ବନ୍ଧୁର ଭୂଇଁରେ ମଡ଼ାଇ ଦେବ। ଏ ବନ୍ୟାର ସୁଅ ବ୍ୟାପିଯିବ ଓଡ଼ିଶା ସାରା। ତୁମେମାନେ ଭଗୀରଥ।' ହାୱାଖାଇ ଆମ ଟ୍ୟୁବ ପୁଣି ଫୁଲି ଫମ୍ପେଇ ଉଠେ। ସେ ନିଜେ ଥିଲେ ସ୍ୱପ୍ନ ବିଳାସୀ। ଆମମାନଙ୍କୁ ଉଦ୍ଦୀପିତ କରିବାକୁ ସେ ନବପତ୍ର ସଂପାଦକୀୟ (ଜୁଲାଇ-୧୯୬୩)ରେ ଲେଖିଲେ।

"ତରୁଣର ସ୍ୱପ୍ନ, ସେ ତରୁଣ ଯଦି ହୁଏ ସାହିତ୍ୟିକ,
ତେବେ ତ ସ୍ୱପ୍ନର ଶେଷ ନାଇଁ। ସେ ଦିନ ଲେଖିଥିଲୁଁ

'ନଦୀରେ ଆସିଛି ବନ୍ୟା । ବନ୍ଧ ଭଙ୍ଗା ଜୁଆରର
ତୋଡ଼ ରୋକି ହେଲା ନାହିଁ । ଆଜି ସେଇ ଜୁଆରର
ପ୍ରବାହରେ ବଲ୍‌ଗା ଛିଣ୍ଡା ଘୋଡ଼ା ପରି ଛୁଟିଛନ୍ତି
ଏମାନେ........ଅବିଶ୍ରାନ୍ତ ।"

ଲକ୍ଷ୍ମୀଧର ବାବୁଙ୍କ ଖାସ୍ ଖେୟାଲି କାରବାର ଯୋଗୁ ନବପତ୍ର ପ୍ରକାଶରେ ଅଯଥା ବିଳମ୍ବ ହୋଇଯାଏ । ଆମେ ପ୍ରେସ୍‌ରେ ବସି ବସି ଫେରୁଁ । ବିରକ୍ତ ହେଉ । ଥରେ ବଂଶୀବାବୁ କହିଲେ, ଚାଲ, ଆଜି ମୁଁ ବୁଢ଼ାକୁ ଆଚ୍ଛାକରି ଶୁଣାଇବି । ସେଦିନ ଶନିବାର ଥାଏ । ଅଫିସ ଅଧା ଛୁଟି । ଖରାବେଳେ ଗୋଟାଗୋଟି ହୋଇ ଆମେ ପ୍ରେସ୍‌ରେ ଯାଇ ପହଞ୍ଚିଲୁଁ । ଚୁପ୍ ଚାପ୍ ମୁହଁ ଫୁଲେଇ ବସିଲୁଁ ବଂଶୀବାବୁଙ୍କ କହିବାକୁ ଅପେକ୍ଷା କରି । ଲକ୍ଷ୍ମୀଧର ବାବୁ ଧୋତି ପଞ୍ଜାବୀ ପିନ୍ଧି ବସିଥିଲେ ଗମ୍ଭୀର ଭାବରେ । କିଛି ଗଭୀର କଥା ଚିନ୍ତା କରୁଥିଲେ କି କ'ଣ । ବଂଶୀବାବୁ ମୁହଁ ଖୋଲିବାକୁ ଆଙ୍କ ପାଙ୍କ କଲାକ୍ଷଣି, ଶୂନ୍ୟବାଣୀ ହେଲା ପରି କହିଲେ, ବୁଝିଲ, ମୁଁ ସ୍ଥିର କରିନେଲି । ଏଥର ସିନେମାରେ ପଶିବାକୁ ହେବ । ସିନେମା ବର୍ତ୍ତମାନ ସବୁଠାରୁ ବଡ଼ ମାଧ୍ୟମ । କେବଳ ସାହିତ୍ୟ ଲେଖା, ପତ୍ରିକା ଛପାରେ ସୀମିତ ରହିଲେ ଚଳିବ ନାହିଁ । କାହାଣୀ ପ୍ରସ୍ତୁତ ହୋଇ ସାରିଛି । ପୂରାପୂରି ନୂଆ ମୁହଁ, ନୂଆ ବାଗ ବଗର । ପରଦା ଅଣ୍ଡା ଥିଏଟରୀ ସିନେମା ନୁହଁ । ଯା'କୁ କହନ୍ତି ସିନେମା! ଏକବାର ନୂଆ ଆଲୋଡ଼ନ ନେଇ ଦର୍ଶକଙ୍କ ଆଗରେ ଉଦ୍‌ଭାସିତ ହେବ ।'

କଥା ଶୁଣି ଅବିଶ୍ୱାସ୍ୟ ଭାବେ ଆମେ ଆଖି ମିଟ୍ଟି କଲୁଁ । ବଂଶୀ ବାବୁଙ୍କ ପାଟି ଆ' ହୋଇଗଲା । ସମ୍ଭାଳି ନପଡ଼ି ହରିବାବୁ ପଚାରିଲେ, ଆଜ୍ଞା, ଅଭିନେତା ଅଭିନେତ୍ରୀ କିଏ କିଏ ସବୁ ହେବେ ? ଉଚ୍ଛଣ୍ଠୁର କାଉଁରୀ କାଠିରେ ସମ୍ମୋହନ ବୁଣି ଲକ୍ଷ୍ମୀଧର ବାବୁ ପଚାରିଲେ, ତମେମାନେ ପାର୍ଟ କରିବ ? ଫଟୋଜିନିକ୍ ଚେହେରା ଥିଲେ ହେଲା । ବିଷ୍ଣୁର ନାକ ସୁନ୍ଦର, ସେ ଚାନସ୍ ପାଇବ ।' ମୁଁ ଲାଜ ଲାଜୁଆ ଆନନ୍ଦରେ ବିଗଳିତ ହୋଇଗଲି । ପ୍ରାୟ ସପ୍ତାହେ କାଳ ରାତି ଉଜାଗର ହୋଇ ସିନେମା ସପ୍ନର ବୁଢ଼ିଆଣୀ ଜାଲ ବୁଣିଛି । ସେଦିନ ଆଉ ନବପତ୍ର କଥା ଉଠିଲା ନାହିଁ । ନୂଆ ଚଳଚ୍ଚିତ୍ରର ସପନ ଧୂନି ଜଳିଲା ରାତି ଦଶଟା ଯାଏ । ଭାବନାରେ ବୁଡ଼ି ବୁଡ଼ି ଆମେ ଘରକୁ ଫେରିଲୁ ବିଳମ୍ବ ରାତିରେ ।

କଲଚରଲ ଏକାଡେମୀର ପ୍ରଥମ ବାର୍ଷିକ ଉତ୍ସବ ଅନୁଷ୍ଠିତ ହେଲା ୧୯୬୩ ଅକ୍ଟୋବର ଚାରି ଓ ପାଞ୍ଚ ତାରିଖ ଦୁଇ ଦିନ ବ୍ୟାପି । ଲକ୍ଷ୍ମୀଧର ବାବୁଙ୍କର କାରବାର ସବୁ ଦୋସରା । ଗତାନୁଗତିକ ଠାରୁ ଯେମିତି ହେଉ ଭିନ୍ନ ଦିଶିବା ଚାହିଁ । ଅତିଥି ହୋଇ ଆସିବାକୁ

ବିନା ଦ୍ୱିଧାରେ ରାଜି ହୋଇଗଲେ ପ୍ରଖ୍ୟାତ ଲେଖକ କାଳିନ୍ଦୀ ଚରଣ ପାଣିଗ୍ରାହୀ ଓ କବି ରାଧା ମୋହନ ଗଡ଼ନାୟକ। ଉଭୟଙ୍କ ସହିତ ଲକ୍ଷ୍ମୀଧର ବାବୁଙ୍କର ଭଲ ସଂପର୍କ। କବି ଗଡ଼ନାୟକଙ୍କ ପ୍ରାଣର ଦୋସର- ତୃ ତା, ମାନସ ମୋହନ ତକାତକି। ନିମନ୍ତ୍ରଣ ପତ୍ରର ଖସଡ଼ା ପ୍ରସ୍ତୁତ ହେଲା। ଅତିଥି ମାନଙ୍କୁ ଆସିବା ପାଇଁ ବାଟଖର୍ଚ୍ଚ ପଠାଇ ଦିଆଗଲା। ଉତ୍ସବ ହେବାକୁ ଏଗାର ବାରଦିନ ବାକିଥାଏ, ହଠାତ୍ ଲକ୍ଷ୍ମୀଧର ବାବୁ ବାହାରିଲେ କଲିକତା। ଆମକୁ କହିଲେ, ବ୍ୟସ୍ତ ହେବାର କିଛି ନାହିଁ। ଖୁବ୍ ବେଶୀ ହେଲେ ଚାରିଦିନ। ସେ ଫେରିଲେ ଅନ୍ୟାନ୍ୟ ବ୍ୟବସ୍ଥା କରାଯିବ। ହେଲେ ଚାରିଦିନ ଯାଇ ଆଠଦିନ ବିତିଲା ତାଙ୍କର ଦେଖାନାହିଁ। ଘରକୁ ମଧ କିଛି ଖବର ନାହିଁ। ଆମେ ପ୍ରତିଦିନ ପ୍ରେସ୍‌କୁ ଯାଇ ନିରାଶ ହୋଇ ଫେରୁଁ। ବଂଶୀଧର ମହାପାତ୍ର ଚାକିରି ଛାଡ଼ି ନିଜେ ଗୋଟିଏ ପ୍ରେସ୍ ଖୋଲିବେ ବୋଲି ହିନ୍ଦୁସ୍ଥାନ ପ୍ରିଣ୍ଟର୍ସରେ ବସି ଅଭିଜ୍ଞତା ହାସଲ କରୁଥାନ୍ତି। ଆଉ ଦୌଡ଼ିବା ଲୋକ ହେଲେ ଗୋକୁଳି ବାବୁ, ହରିବାବୁ, ବାଣୀ ବାବୁ ଓ ମୁଁ। ଅନ୍ୟମାନେ କେବଳ ଖବର ନିଅନ୍ତି। ପାଣ୍ଠିବୋଲି ସେମିତି କିଛି ନଥାଏ ଏକାଡେ଼ମୀର। ଅଭିଜ୍ଞତା ମଧ ନ ଥାଏ। ଆମକୁ ବୁଦ୍ଧି ଦିଶିଲା ନାହିଁ। ରଜନୀ ବାବୁଙ୍କ ପାଖକୁ ଗଲୁଁ ପରାମର୍ଶ ପାଇଁ, ସେତିକି ବେଳେ ସେ ମଧ ନିଜର ଗୋଟିଏ ପ୍ରେସ୍ କରିବା ଯୋଜନାରେ ବ୍ୟସ୍ତ ଥାଆନ୍ତି ବୋଧ ହୁଏ। ତେଣୁ ଆଗୁଆ ହୋଇ ପାରୁନଥାନ୍ତି। ସବୁକଥା ଶୁଣି ସେ ନିରୁପାୟତା ପ୍ରକାଶ କଲେ। ତେଣୁ ସ୍ଥିର ହେଲା, ଆସନ୍ତା କାଲି ସକାଳେ ସମସ୍ତେ ଆସି ହିନ୍ଦୁସ୍ଥାନ ପ୍ରିଣ୍ଟର୍ସରେ ଏକାଠି ହେବେ। ଯଦି ଲକ୍ଷ୍ମୀଧର ବାବୁ ସକାଳ ସୁଦ୍ଧା ନ ଫେରନ୍ତି, ତେବେ ଅତିଥିମାନଙ୍କୁ ଟେଲିଗ୍ରାମ କରି ବର୍ତ୍ତମାନ ପାଇଁ କାର୍ଯ୍ୟକ୍ରମ ସ୍ଥଗିତ ରହିଲା ବୋଲି ଜଣାଇ ଦିଆଯିବ।

କାମ ଧନ୍ଦା ଛାଡ଼ି ଆମେ ସକାଳୁ ସକାଳୁ ଯାଇ ପ୍ରେସ୍‌ରେ ହାଜର ହେଲୁଁ। ଆମ ସମସ୍ତଙ୍କ ମନ ଭାଙ୍ଗି ପଡ଼ିଥାଏ। ପ୍ରତାରିତ ହେଲେ ଯା' ହୁଏ। ବଂଶୀବାବୁ ଉଚ୍ଚବାଚ୍ୟ କରୁଥାନ୍ତି। ହାତୁଡ଼ରେ ପଡ଼ିଲେ ସେ ଗୋଟା ଗିଳିଯିବେ ଲକ୍ଷ୍ମୀଧର ବାବୁଙ୍କୁ। ସମସ୍ତଙ୍କ ନଜର ଘଡ଼ି ଉପରେ। କଲିକତା ଗାଡ଼ିବେଳ ଗଡ଼ିଗଲାଣି। ଦଶଟା ବାଜିଲେ ଯିବୁଁ ଟେଲିଗ୍ରାମ୍ କରିବାକୁ। ଆଉ ମାତ୍ର ପାଞ୍ଚ ସାତ ମିନିଟ୍ ବାକି ଅଛି। ଗୋଟାଏ ରିକସା ଆସି ଠିଆହେଲା ପ୍ରେସ୍ ସାମ୍ନାରେ। ସେଥିରୁ ରୋଗୀଟିଏ ପରି ଓହ୍ଲାଇଲେ ଲକ୍ଷ୍ମୀଧର ବାବୁ। କେଶ ବାସ ଅବିନ୍ୟସ୍ତ, ବାଁ ହାତରେ ବ୍ୟାଣ୍ଡେଜ! ଭୂତ ଦେଖିଲା ପରି ଆମେ ସ୍ତବ୍ଧ ହୋଇଗଲୁ। ହାଁ, ଶବ୍ଦ କରି ବଂଶୀବାବୁ ଠିଆହୋଇ ପଡ଼ିଲେ। ସମସ୍ତଙ୍କ ଉଦ୍‌ବିଗ୍ନ ମୁହଁକୁ ଦେଖି କରୁଣ ହସ ଟିକେ ଲକ୍ଷ୍ମୀଧର ବାବୁଙ୍କ ମୁହଁରେ ଫୁଟି ମଉଳିଗଲା। ସେ ଧୀରେ ଧୀରେ ଆସି, ହାତ ବ୍ୟାଗଟା

ତଳେ ଥୋଇ ଦେଇ ତାଙ୍କ ଚେୟାରେ ବସି ପଡ଼ିଲେ ଥକ୍କାମାରି । ଆମେ ସବୁ ଚୁପ୍ ଚାପ୍ । କିଛି କ୍ଷଣ ପରେ ଦୀର୍ଘ ନିଶ୍ୱାସ ଛାଡ଼ି ସେ ମୁହଁ ଖୋଲିଲେ, ମରିଯାଇଥାନ୍ତି, ମରୁ ମରୁ ବଞ୍ଚିଗଲି... ।'

କ'ଣ ହେଲା ବୋଲି ପଚାରିବାକୁ କାହା ମୁହଁ ଖୋଲିବା ପୂର୍ବରୁ ସେ ହାତ ଉଠେଇ ରୋକି ଦେଲେ । କହିଲେ, କହିବି ! ଚା' ପିଇଲଣି ?' ତା ପରେ ଡମାକୁ ଡାକି ଆଦେଶ ଦେଲେ ବ୍ୟାଗଟା ଭିତରକୁ ନେଇଯିବାକୁ ଏବଂ ଦୋକାନରୁ ସମସ୍ତଙ୍କ ପାଇଁ ଚା' ଆଣିବାକୁ । ଚା', ପାନ ପରେ, ଥଙ୍ଗେଇ ଥଙ୍ଗେଇ କହିଲେ, ଆକ୍ସିଡେଣ୍ଟ ହୋଇଗଲା । ତୁମେମାନେ ବ୍ୟସ୍ତ ହେଉଥିବ ବୋଲି ମୁଁ ସାହାସ କରି ଚାଲି ଆସିଲି । ଚିନ୍ତା କରନା, ହାତରେ ପୁରା ଚାରିଦିନ ସମୟ ଅଛି । ସବୁ ବ୍ୟବସ୍ଥା ହୋଇଯିବ । ନିମନ୍ତ୍ରଣ ପତ୍ର ବାଣ୍ଟିବା ଓ ଅନ୍ୟାନ୍ୟ ଯୋଗାଡ଼ରେ ତୁମେମାନେ ଲାଗିଯାଅ । ମୁଁ ଟିକେ ଧୁଆ ପୋଛା ହୋଇ ବିଷ୍ଣୁକୁ ନେଇ ବାହାରିବି । ଷ୍ଟିଲ୍‌ପ୍ଲାଣ୍ଟ ଜେନେରାଲ୍ ମାନେଜର ଓ ଟାଉନ ଆଡ଼ମିନିଷ୍ଟ୍ରେଟରଙ୍କୁ ଦେଖାକରି ଠିକ୍ ଠାକ କରିଦେଇ ଆସିବି । ସଂଧ୍ୟାବେଳେ ପୁଣି ଏକାଠି ହେବା ।

ମୁଁ ବସି ରହିଲି । ଅନ୍ୟମାନେ ଚାଲିଗଲେ ଅଫିସରେ ମୁହଁ ଦେଖେଇ ଆସିବାକୁ । ପ୍ରାୟ ବାରଟା ବେଳକୁ ଲକ୍ଷ୍ମୀଧର ବାବୁ ଅନ୍ଦର ମହଲରୁ ବାହାରି ଆସିଲେ । ହସ ହସ ମୁହଁ । ଧୋତି ପଞ୍ଜାବୀରେ ପୁରା ଫିଟ୍ ଫାଟ । ହାତରୁ ବ୍ୟାଣ୍ଡେଜ୍ ଉଭାନ୍ । ପରେ ଆମେ କଥାବାର୍ତ୍ତା ହେଲୁଁ, ଦିନ ଗଡ଼େଇ ଆସିବା ପାଇଁ ଏହା ଥିଲା ତାଙ୍କର ସୁଚତୁର ଅଭିନୟ ଏବଂ କଲିକତା ନୁହଁ, ସେ ଟାଟାରୁ ଫେରିଛନ୍ତି ରାତି ପାସେଞ୍ଜରରେ । ରିକ୍ସାଟାଏ ଠିକ୍ ହେଲା ଘଣ୍ଟାକୁ ପଞ୍ଚସ୍ତରୀ ପଇସା ମୂଲରେ । ଆମେ ଜୁଆଡ଼େ ଯିବୁ କାମ ସରିବା ପର୍ଯ୍ୟନ୍ତ ସେ ରହିବ । ପ୍ରଥମେ ଗଲୁ ଷ୍ଟିଲ୍‌ପ୍ଲାଣ୍ଟ ଜେନେରାଲ ମ୍ୟାନେଜର (ଏବର ମ୍ୟାନେଜିଂ ଡିରେକ୍ଟର)ଙ୍କ ଅଫିସକୁ । ଜି.ଏମ୍.ଥା'ନ୍ତି ଏସ୍.ଟି. ରାଜା । ଭାରି ଜବର ହାକିମ୍ । ଲକ୍ଷ୍ମୀଧର ବାବୁ ଚିରକୁଟରେ ନାଁ ଲେଖି ପଠାଇଦେଲେ । ସେତେବେଳେ ସେ ଥା'ନ୍ତି ପି.ଟି.ଆଇ.ର ରାଉରକେଲା ପ୍ରତିନିଧି । ସଂଗେ ସଂଗେ ଡାକରା ଆସିଲା । ଭିତରକୁ ପଶି ପ୍ରଥମେ ମୋର ପରିଚୟ ବାଢ଼ିଲେ,....ବ budding writer and one of your employees । ଇସ୍‌ପାତ ସହରର ପ୍ରଥମ ସାହିତ୍ୟ ଉତ୍ସବକୁ ରାଜା ସାହେବ ହାର୍ଦ୍ଦିକ ସ୍ୱାଗତ ଜଣାଇଲେ । ଆୟୋଜନ ଖର୍ଚ୍ଚ ପାଇଁ ହଜାର ଟଙ୍କାର ଅନୁଦାନ ଓ ଉତ୍ସବକୁ ଆସୁଥିବା ଅତିଥି ଦ୍ୱୟଙ୍କ ପାଇଁ କମ୍ପାନୀ ଅତିଥିର ମାନ୍ୟତା ଦେବାକୁ ହାତେ ହାତେ ମଞ୍ଜୁର କରିଦେଲେ । ଉତ୍ସବ ଶେଷ ହେବାର ପରଦିନ ଅତିଥି ଓ କଲଚରାଲ ଏକାଡ଼େମୀର ସଭ୍ୟମାନଙ୍କ ସହିତ ରାତ୍ରି ଭୋଜନରେ ଯୋଗ ଦେବାକୁ

ମଧ୍ୟ ରାଜି ହୋଇଗଲେ । ସେକ୍ଟର-୧୮ ଇସ୍ପାତ ବିଦ୍ୟାଳୟ ଅଡ଼ିଟୋରିୟମରେ ଉତ୍ସବ କରିବାକୁ ପୂର୍ବରୁ ସ୍ଥିର ହୋଇଥିଲା । କେବଳ ଟାଉନ୍ ଆଡ୍‌ମିନିଷ୍ଟ୍ରେଟରଙ୍କ ନିତିଗତ ସମ୍ମତିର ଆବଶ୍ୟକ ଥିଲା । ପହଞ୍ଚିବା କ୍ଷଣି କାଟୁର ସାହେବ ଅନୁମତି ଦେଇଦେଲେ । ରିକ୍ସାରେ ବସି ଫେରିବାରେ ଲକ୍ଷ୍ମୀଧର ବାବୁ ନାୟକୋଚିତ ଦମ୍ଭରେ କହିଲେ, କ'ଣ, ଦେଖିଲ ତ ? ତୁମେମାନେ ବୃଥା ଭୟ କରୁଥିଲ । ମୁଁ ଡଙ୍ଗାରେ ବସେଇଚି, କୂଳରେ ନେଇ ଲଗେଇବି ।'

ସେ ଦିନ ସଂଧ୍ୟାବେଳେ ପ୍ରେସ୍‌ରେ ମିଟିଂ ହେଲା । ରଜନୀ ବାବୁ ପ୍ରଭୃତି ସମସ୍ତେ ଆସିଥିଲେ । କାର୍ଯ୍ୟକ୍ରମର ଖସଡ଼ା ପ୍ରସ୍ତୁତ ହେଲା । ପ୍ରଥମ କଥା ହେଲା ଅତିଥି ଦ୍ୱୟଙ୍କ ଷ୍ଟେସନ ଓ ବସଷ୍ଟାଣ୍ଡରେ ଫୁଲମାଳ ଦେଇ ସ୍ୱାଗତ କରିବାକୁ ହେବ । ପ୍ରଥମ ଦିନ ଉତ୍ସବରେ ଭାଷଣ ପୂର୍ବରୁ ଓଡ଼ିଶାର ବିଶିଷ୍ଟ କବିମାନଙ୍କର କବିତା ଆବୃତ୍ତି ଓ ଦ୍ୱିତୀୟ ଦିନ ସ୍ୱରଚିତ କବିତା ହେବ । କିଏ କିଏ କ'ଣ ଆବୃତ୍ତି କରିବେ ତାର ତାଲିକା ପ୍ରସ୍ତୁତ ହେଲା । ଦ୍ୱିତୀୟ ଦିନ ସ୍ୱରଚିତ କବିତା ପାଇଁ ଲକ୍ଷ୍ମୀଧର ବାବୁ ନାଁ ଡାକିଗଲେ । ଏବଂ ଆସନ୍ତା କାଲି ସଂଧ୍ୟାରେ ଆବୃତ୍ତିର ରିହାର୍ସଲ ଦେବାକୁ କେତେ ଜଣଙ୍କୁ କହିଲେ । ତାଲିକାରେ ମୋ ନାଁ ନଥିଲା । ମନ କ୍ଷୁଣ୍ଣକରି ମୁଁ ଚୁପ୍‌ଚାପ୍ ବସିଥାଏ । ବୋଧହୁଏ ହରିବାବୁ ହେବେ, କହିଲେ, ଆଜ୍ଞା, ବିଷ୍ଣୁ ବାବୁ ରହିଗଲେ ।' ଲକ୍ଷ୍ମୀଧର ବାବୁ ନାଟକୀୟ ଭଙ୍ଗିରେ,ଉତ୍କଣ୍ଠା ବଢ଼ାଇ ସମସ୍ତଙ୍କ ମୁହଁକୁ ଚାହିଁଲେ । ତା ପରେ କହିଲେ, ଗୋଟାଏ ନୂଆ କଥା ହେବ । କବିତା ନୁହଁ, ବିଷ୍ଣୁ ଗଳ୍ପ ଆବୃତ୍ତି କରିବ ।'

ମୁଁ ଜାଣି ଗଛରୁ ପଡ଼ିଲି । ଗଳ୍ପ ଆବୃତ୍ତି ! ଏକଥା ମୁଁ ପୂର୍ବରୁ ଶୁଣି ନଥିଲି । ଆତଙ୍କିତ ହୋଇ ଆପତ୍ତି ଜଣାଇଲି । ଲକ୍ଷ୍ମୀଧର ବାବୁ ଶୁଣିଲେ ନାହିଁ । କହିଲେ, ତୁମର ସେ 'ସେନସସ୍' ଗପଟି ଧରି କାଲି ଉପରଓଳା ଆସ । ମୁଁ ଶିଖେଇଦେବି ଗଳ୍ପ କିପରି ଆବୃତ୍ତି ହୁଏ । ଦେଖାଦେଖି ବଂଶୀବାବୁ ଓ ଭୂପେନ୍ ବାବୁ ମଧ୍ୟ ଗଳ୍ପ ପଢ଼ିବାକୁ ଆଗଭର ହେଲେ । କାରଣ ସେ ଦି'ଜଣ କବିତା ଲେଖୁନଥିଲେ । ତା'ପରଦିନ ଖରାବେଳେ ଯାଇ ପାଞ୍ଚ ଛ'ଥର ରିହାର୍ସଲ ଦେଲି । ଗଳ୍ପ ଆବୃତ୍ତି ସମୟରେ ମୁହଁ ହାତ, ଭାବ ଭଙ୍ଗି କିପରି ନାଟକୀୟ ଢଙ୍ଗରେ ସଂଚାଳନ ହେବ ଲକ୍ଷ୍ମୀଧର ବାବୁ ଶିଖାଇ ଦେଲେ । ତଥାପି ମନରେ ଭୟଥାଏ । ଆଡ଼ମ୍ବର ଲଘୁ କ୍ରିୟାରେ ପରିଣତ ହେବନିତ ! ଯା ହେଉ ମଞ୍ଚରେ ଯାଇ ଠିଆ ହେବା ମାତ୍ରେ ଭୟ କଟିଗଲା । ପରିଣତ ଅଭିନେତା ପରି ମୁଁ ଆବୃତ୍ତି କରିଗଲି ଗଳ୍ପ 'ଦିନେ ସେନସସ୍‌ରେ' । ସଭାମଞ୍ଚ ଓ ଅଡିଟୋରିୟମ୍‌ରେ ଜୋରଦାର କରତାଳି ପଡ଼ିଲା । ଲକ୍ଷ୍ୟ କଲି, ସମସ୍ତେ କରତାଳି ଦେଉଥିଲା ବେଳେ ଲକ୍ଷ୍ମୀଧର ବାବୁ ଓଠରେ ଆଙ୍ଗୁଳି ଚାଳନା କରି ମନ୍ଦ ମନ୍ଦ ହସୁଛନ୍ତି । ସଫଳତାର ହସ । ଗୁରୁ ମାନିନେଲି ତାଙ୍କୁ । ତା' ପରଠାରୁ ଯେତେ ଗଳ୍ପ କବିତା ପାଠ ବା ଆବୃତ୍ତି କରିଛି,

ସେଥିରେ ରହିଛି ଲକ୍ଷ୍ମୀଧର ବାବୁଙ୍କ ଅଭିବ୍ୟକ୍ତିର ଛାପ। ଏହା ପରଠାରୁ ମୋର ନାଁବାଳକି କଟିକଲା। ମନକୁ ମନ ଦୁଇଜଣ ନୂଆ ତରୁଣ ଆସି ଯୁଟିଗଲେ ବାର୍ଷିକୋତ୍ସବରେ। ଅଦ୍ୱୈତ ପ୍ରସାଦ ବିଶ୍ୱାଳ ଓ ଜୟ ମହାପାତ୍ର। ଜୟକୁ ଆମେ ଭିକ୍ଟରର ବୋଲି ଡାକୁଥିଲୁଁ। ଏ ଦିଜଣ ସେଚ୍ଛାକୃତ ଭାବେ ସଭାମଞ୍ଚ , ଅଡିଟୋରିୟମ୍ ସଜା ସଜି ଓ ବୋଲହାକ କାମସବୁ କରିଥିଲେ।

କଲଚରାଲ ଏକାଡେ଼ମୀର ଆମେ କେତେଜଣ ନିତି ଦିନିଆଁ କର୍ମୀ ଥିଲୁଁ। ଆଦର୍ଶ, ଆଦେଶ ଓ କର୍ମ ବୋଝ ସବୁ ଆମରି ମୁଣ୍ଡ ଉପରେ। ନବପତ୍ର ଛାପା, ବିଜ୍ଞାପନ ସଂଗ୍ରହ, ପତ୍ରିକା ବିକ୍ରି ବିତରଣ ସହିତ ଅନ୍ୟାନ୍ୟ ଆନୁଷ୍ଠାନିକ କାମ ଓ ଲୋକ ସଂପର୍କ କାର୍ଯ୍ୟ ଆମକୁ କରିବାକୁ ହେଉଥିଲା। କର୍ମକର୍ତ୍ତା ତାଲିକାରେ ନାଁ ଥାଉ କି ନ ଥାଉ। ବ୍ୟକ୍ତିଗତ ଜୀବନ ଓ ଅନୁଷ୍ଠାନ ଏକାକାର ହୋଇଗଲେ ଏପରି ଘଟିଥାଏ ବୋଧହୁଏ। ଚାକିରି, କଲଚରାଲ ଏକାଡେ଼ମୀ, ସାହିତ୍ୟ ଚକ୍ର ଓ ନବପତ୍ର ପାଇଁ ସମୟ ନିଅଣ୍ଟ ହେଉଥିଲା। ସେଥିରେ ଲେଖା ଲେଖି ଓ ପଢ଼ାପଢ଼ି ଥିଲା ଅନିବାର୍ଯ୍ୟ କର୍ମ। ତେଣୁ ରାତି ଗୋଟାଏ ପୂର୍ବରୁ ବିଛଣା ଧରିବା ପ୍ରଶ୍ନଇ ନଥିଲା। ଏହା ମଧ୍ୟରେ ଲେଖୁ ଲେଖୁ ମୁଁ ଗୋଟାଏ ଏକାଙ୍କିକା ଲେଖି ଦେଇଥିଲି। କାହାଣୀର ମର୍ମ କଥାଟି ଏକ ସତ୍ୟ ଘଟଣା। ଶୁଣିଥିଲି ବାଣୀ ବାବୁଙ୍କ ଠାରୁ। କଥାଟା ମୋ ମନ ଭିତରେ ଛଟପଟ ହେଉଥିଲା। ସେଥିରୁ ମୁକ୍ତି ପାଇବାକୁ ଲେଖି ହୋଇଗଲା। ଏକଥା ମୁଁ କାହାରିକୁ କହିନଥିଲି କି ସାହିତ୍ୟ ଚକ୍ରରେ ପଢ଼ି ନଥିଲି। ନବପତ୍ର ଦ୍ୱିତୀୟ ବର୍ଷର ପ୍ରଥମ ସଂଖ୍ୟା (ଜାନୁୟାରୀ-୧୯୬୪) ପାଇଁ ଲକ୍ଷ୍ମୀଧର ବାବୁ ତାଗିଦ୍ ଦେଲେ। 'ଦିନେ ସେନ୍‌ସସ୍‌ରେ' ଗଳ୍ପଟି ଦେବାକୁ ତାଙ୍କର ନିର୍ଦ୍ଦେଶ ଥିଲା। ମୁଁ ଭାବୁଥିଲି, ପ୍ରଥମଥର ପାଇଁ ଲେଖିଥିବା କ୍ଷୁଦ୍ର ନାଟକର ଚରିତ୍ରମାନେ କିପରି ମୁକ୍ତି ଲାଭ କରନ୍ତୁ। ଦିନେ ଅସମୟରେ ଏକା ଯାଇ ପହଞ୍ଚିଲି ପ୍ରେସରେ। ଲକ୍ଷ୍ମୀଧର ବାବୁଙ୍କୁ ନାଟିକାଟି ବଢ଼ାଇ ଦେଇ ଡରିଡରି କହିଲି, ଏଟା ଟିକେ ଦେଖିବେ। ହାତକୁ ନେଇ ଲକ୍ଷ୍ମୀଧର ବାବୁ ହସିଦେଲେ। 'ଛାଇ', ତୁମେ ଲେଖିଚ ? ନାଁ ଟା ବଢ଼ିଆ ଦେଇଚ। ହଉ ମୁଁ ଦେଖିବି।" ସାଙ୍ଗରେ ସେନ୍‌ସସ୍ ଗଳ୍ପ ନେଇଥିଲି। ସେ ସଂପର୍କରେ ପ୍ରଶ୍ନ ନଉଠିବାରୁ ଦେଲି ନାହିଁ। ତାହା ପ୍ରକାଶ ପାଇଥିଲା ପରବର୍ତ୍ତୀ ସଂଖ୍ୟାରେ ନବପତ୍ରରେ ଲକ୍ଷ୍ମୀଧର ବାବୁଙ୍କ ଶେଷ ସଂପାଦକତ୍ୱରେ।

ନବପତ୍ରର ପ୍ରାରମ୍ଭିକ ପ୍ରୁଫ ଦେଖା କାମ ମଧ୍ୟ ଆମେ କରୁଥିଲୁଁ। ଭଲ ଦେଖନ୍ତି ବଂଶୀବାବୁ ଓ ହରିବାବୁ। ମୋର ଭୁଲ୍ ରହିଯାଏ, ଆଖି ଡିଆଁ ପଢ଼ିବା ବଦଗୁଣ ଯୋଗୁଁ। ଏମିତି ଦିନେ ପ୍ରୁଫ ଧରି ଧରି ବଂଶୀବାବୁ ବଡ଼ ପାଟିରେ କହି ଉଠିଲେ, ଆରେ ହେ..., ବିଷ୍ଣୁ ବାବୁ

କଣ ନାଟକ ଲେଖିଲେଣି । ସମସ୍ତେ ମୁହଁ ଟେକି ଅନେଇଲେ । ମୁଁ ସଂକୋଚରେ ଜୁଡୁବୁଡୁ ହୋଇଗଲି । ପ୍ରୁଫରେ ନାଟକର ନା 'ଛାଇ' କମ୍ପୋଜ ହୋଇ ନଥିଲା । ବଂଶୀବାବୁ ପଚାରନ୍ତେ, ଅନ୍ୟ ରଂଗରେ ଛାପା ହେବ ବୋଲି ଲକ୍ଷ୍ମୀଧର ବାବୁ କହିଲେ । ପୂର୍ବ ଦୁଇ ସଂଖ୍ୟାରେ ବଡ଼ ବଡ଼ ଲେଖକଙ୍କ ଲେଖାର ଶିରୋନାମା ବ୍ଲକ ହୋଇ ରଂଗୀନ କାଳିରେ ଛାପା ହୋଇଥିଲା । ତେଣୁ ମନେ ମନେ ମୁଁ ଖୁସି ହୋଇଗଲି । ଅନ୍ୟ ଅର୍ଥରେ ଲେଖାଟି ଲକ୍ଷ୍ମୀଧର ବାବୁଙ୍କ ମନକୁ ପାଇଛି ବୋଲି ଜଣା ପଡ଼ିଲା । କିନ୍ତୁ ମୋର ସରାଗ ମଉଳିଗଲା, ଯେତେବେଳେ ଦେଖାଗଲା, ବିନା ଶିରୋନାମାରେ ତାହା ଚୂଡ଼ାନ୍ତ ଛାପା ଓ ଭଙ୍ଗାଭଙ୍ଗି ହୋଇ ଥାକ ହୋଇ ଯାଇଛି । ଏହା ଧରା ପଡ଼ିଲା ଶେଷ ମୁହୂର୍ତ୍ତରେ । ଲକ୍ଷ୍ମୀଧର ବାବୁ ବିରକ୍ତ ହେଲେ । ଆଉ ଥରେ ଭିନ୍ନ ରଂଗରେ ଛାପା ହେବ ବୋଲି ସେ ପୃଷ୍ଠାଟି ଅଲଗା ରଖା ହୋଇଥିଲା । ତାକୁ କିଏ ଆଣି ମିଶାଇ ଦେଇଛି ବୋଲି ମେସିନ୍ ମ୍ୟାନ୍ ସଫେଇ ଦେଲା । କିଏ ଆଉ ଆଣିବ ? ଏ କାମ ତ ମୂଳରୁ ଆମେ ହିଁ କରି ଆସୁଛୁଁ । ପୁଣି ସବୁ ଥାକରୁ ଅଲଗା କରି ଛାପିବା ଓ ମିଶାଇବା ଥିଲା ଝିଞ୍ଜଟ ଓ ସମୟ ସାପେକ୍ଷ କାମ । ସମସ୍ତେ ଚିନ୍ତା କରୁଥିବା ବେଳେ, ଆମ ଭିତରୁ ଜଣେ କହିଲେ, ସୂଚୀ ପତ୍ରରେ ତ ନାଁ ଅଛି । ଫର୍ଦ୍ଦରେ ନ ଥିଲେ କ'ଣ ଭାସିଗଲା ସେଇଠୁ । ଏପରି ତାଚ୍ଛଲ୍ୟ କଥା ଶୁଣି ମୋ ଦେହରେ ନିଆଁ ଲାଗିଗଲା । ମୁଁ ଆଳକରି ପ୍ରେସ୍‌ରୁ ପଳାଇ ଗଲି । ଦୁଇଦିନ ଯାଏ କାହାରିକୁ ଦେଖା ଦେଲି ନାହିଁ । ତୃତୀୟ ଦିନ ସଂଧ୍ୟାବେଳେ ବଂଶୀବାବୁ ଆସି ମତେ ଡାକିନେଲେ ଇନ୍ଦିରାଗାନ୍ଧୀ ପାର୍କକୁ । ଅନେକ କଥା କହି ମତେ ବୁଝାଇଲେ ଓ ସେଠାରୁ ଲକ୍ଷ୍ମୀଧର ବାବୁଙ୍କ ପାଖକୁ ନେଇଗଲେ । ମତେ ଦେଖି ସେ ତାଙ୍କ ସ୍ୱଭାବ ସୁଲଭ ଢଙ୍ଗରେ ହସିଲେ । ତମାକୁ ଚ' ଆଣିବାକୁ ନିର୍ଦ୍ଦେଶ ଦେଇ କହିଲେ, ବିଷ୍ଣୁ, ତୁମେ ଈର୍ଷାର ପାତ୍ର ହୋଇଗଲାଣି ?

ବଂଶୀବାବୁ ଓ ଲକ୍ଷ୍ମୀଧର ବାବୁଙ୍କ ଠାରୁ ଶୁଣିବା ପରେ ଜାଣିଲି; ଈର୍ଷା ଆମ ଭିତରେ ଅନୁପ୍ରବେଶ କରିନଥିଲା, ଥିଲା ମୂଳରୁ ଏବଂ ଅଧିକାଂଶଙ୍କୁ ତାର ଦହନ ସୁଖ ଭୋଗ କରିବାକୁ ପଡ଼ିଛି ସମୟ କ୍ରମେ । ଏକାଡ଼େମୀ ଛାଡ଼ିବାର ପ୍ରାୟ ଚବିଶ ବର୍ଷପରେ, ୧୯୮୮ କିମ୍ବା ୮୯ରେ ଲକ୍ଷ୍ମୀଧର ବାବୁ ନିମନ୍ତ୍ରିତ ହୋଇ ଆସିଲେ ଲୋକ ନାଟକ ମହୋତ୍ସବକୁ । କାହିଁକି କେଜାଣି ରଜନୀବାବୁ ପ୍ରସ୍ତାବ ଦେଲେ । ସମସ୍ତେ ଖୁସିରେ ହିଁ ଭରିଲେ । କଲଚରାଲ ଏକାଡ଼େମୀର ବଢ଼ତି ଓ ଆମର ଅତୁଟ ସ୍ନେହଶ୍ରଦ୍ଧା ଲକ୍ଷକରି ସେ ଭାରି ଖୁସି ହୋଇଗଲେ । ଦିନେ ନିଜେ ଆରମ୍ଭକରି, ଅଭିମାନରେ ଛାଡ଼ି ଚାଲିଯାଇଥିବା ଅନୁଷ୍ଠାନରୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା, ଉପଢୌକନ ଓ ମାନପତ୍ର ପାଇବେ ବୋଲି ସେ କଳ୍ପନା କରିନଥିଲେ । ସେ

କେଇଦିନ ଆମ ଗହଣରେ ତାରୁଣ୍ୟ ବିଭୋର ହୋଇ ରହିଲେ। ସେତିକିବେଳେ ମତେ ଏକାନ୍ତରେ ପଚାରି ଥିଲେ, କ'ଣ ବିଷ୍ଣୁ, ସବୁ ଭଲରେ ଭଲରେ ଚାଲିଛି ତ ?" ମୁଁ ସୁଯୋଗ ଭଣୁଥିଲି ଖବରଟା ଦେବାକୁ। କହିଲି, ଆପଣଙ୍କର ମନେ ଅଛି ମୋର କ୍ଷୁଦ୍ର ନାଟକ 'ଛାଇ' କଥା ! ନବପତ୍ରରେ ପ୍ରକାଶ ହେବା ପରେ ପରେ ତାହା କଟକରେ ଅଭିନୀତ ହୋଇଛି ଉତ୍କଳ ନାଟ୍ୟ ସଂଘ ଦ୍ୱାରା। ଏବଂ ସାରଦା ପ୍ରସାଦ ଦଳ ବେହେରା ସଂକଳିତ 'ଓଡ଼ିଆ ରଂଗମଞ୍ଚର ଇତିହାସ (୧୯୭୧)ରେ ମାନ୍ୟତା ଲାଭ କରିଛି କ୍ଷୁଦ୍ର ନାଟକ ତାଲିକାରେ। ଶୁଣି ହୋ ହୋ ହୋଇ ହସିଲେ ଲକ୍ଷ୍ମୀଧର ବାବୁ। କହିଲେ, 'ସାବାସ୍'।

୧୯୬୪ ଜୁଲାଇ ମାସରେ କଲଚରାଲ ଏକାଡ଼େମୀର ଦ୍ୱିତୀୟ ବାର୍ଷିକୋତ୍ସବ ଅନୁଷ୍ଠିତ ହେଲା ସେକ୍ଟର-୭ କମ୍ୟୁନିଟ୍ ସେଣ୍ଟରରେ। ଏଥିପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଆର୍ଥିକ ସହାୟତା କରିଥିଲେ। ଦୁଇ ଶହ କି ପାଞ୍ଚ ଶହ ମନେ ନାହିଁ। ଏହା ଥିଲା ଲକ୍ଷ୍ମୀଧର ବାବୁଙ୍କ ସୁକୃତର ଫଳ। ଅତିଥି ହୋଇ ଆସିଥିଲେ ଡଃ କୁଞ୍ଜ ବିହାରୀ ଦାଶ, କବି ମନମୋହନ ମିଶ୍ର ଓ ରାଧାମୋହନ ଗଡ଼ନାୟକ। ଦୁଇ ଦିନ ଧରି ସାହିତ୍ୟ ସଭା ଓ କବିତା ପାଠୋତ୍ସବ ହେଲା ଭରପୂର ହଲରେ। ନବପତ୍ର ଓ ସାହିତ୍ୟଚକ୍ର ଯୋଗୁଁ କଲଚରାଲ ଏକାଡ଼େମୀ ପ୍ରତି ସାଧାରଣରେ ସ୍ୱତନ୍ତ୍ର ସମ୍ମାନ ଓ ଶ୍ରଦ୍ଧାର ବାତାବରଣ ସୃଷ୍ଟି ହୋଇ ଯାଇଥିଲା ରାଉରକେଲା ଓ ବାହାରେ। ଏଣୁ ଲକ୍ଷ୍ମୀଧର ବାବୁଙ୍କ ସ୍ୱଭାବଗତ ଲଗାମ୍ ଛଡ଼ା କାରବାରକୁ ନେଇ ଆମ ଭିତରେ ଏକ ଚେରା ଗୁଞ୍ଜରଣ ଦାନା ବାନ୍ଧୁଥିଲା। ସେତେବେଳେ ତାର ସୁରାକ୍ ଅଧିକାଂଶ ସଭ୍ୟ ବୁଝି ପାରିନଥିଲେ। ଲକ୍ଷ୍ମୀଧର ବାବୁଙ୍କର ସ୍ୱଭାବ ହେଲା, ସେ ଯେତେବେଳେ ଯେଉଁଥିରେ ମାତିଥିବେ, ଭାସିଯିବେ ଥଳକୂଳ ନବିଚାରି। ନୂଆ ଦେଖିଲେ ପୁରୁଣାକୁ ଅବହେଳା କରିବେ। କାଲିର ଶତ୍ରୁ ଆଜି ମିତ୍ର, ଆଜିର ବନ୍ଧୁ ଆସନ୍ତାକୁ ଅଇରି। ଘରେ ହେଉ କି ଅନୁଷ୍ଠାନରେ ହେଉ ତାଙ୍କର ଅଖଣ୍ଡ ମୁରବୀଆନା ରହିବା ଦରକାର। କର୍ତ୍ତବ୍ୟ କରିବେ ଅଖଣ୍ଡ କର୍ତ୍ତୃତ୍ୱ ଥିଲେ। ସଲା ପରାମର୍ଶ ଏକାନରେ ଶୁଣି ସେ କାନରେ ବାହାର କରି ଦିଅନ୍ତି। ତୋଷାମଦିରେ ନିଆଁକୁ ମୁଠାଇ ହାତ ପୋଡ଼କା କରନ୍ତି। ଅକୂଳ ଭାବନା, ଅପରିମିତ ଖିଆଲର ମଣିଷ। ସେ ନିଜେ ଲେଖିଥିଲେ, ନବପତ୍ର ସଂପାଦକୀୟ, 'ଜୀବନ ଯେ ସ୍ୱପ୍ନ ଆଉ ସଂଗ୍ରାମ, କଳ୍ପନା ଆଉ ବାସ୍ତବର ଏକ କାବ୍ୟିକ ସମନ୍ୱୟ'।

ଲେଖାପାଇଁ, ବିଜ୍ଞାପନ ପାଇଁ, ପ୍ରେସ୍ ପାଉଣା ପାଇଁ ତାଗିଦ୍ କରି ସେ ଆମକୁ ବ୍ୟସ୍ତ

କରିଦିଅନ୍ତି । କିନ୍ତୁ ତାଙ୍କର ବଦ୍ ଖିଆଲ୍ ଓ ଅବହେଳା ପାଇଁ ନବପତ୍ର ପ୍ରକାଶନରେ ଅଯଥା ବିଳମ୍ବ ଅଟେ । ଆମେ ରିଷ୍ଟ ହେଲେ, ସେ ବାଆଁରେଇ ଦୋଷ ଲଦନ୍ତି ଆମ ଉପରେ । ନୂଆ ସଂଖ୍ୟା ରହିଁଲେ କାଲି ବାହାରିଯିବ । ଏବର ସଂଖ୍ୟା ସବୁ ବିକି ସାରିଲଣି ? ନୂଆ ବାହାର କରିଦେଲେ ପୁରୁଣା କିଏ ନବ ? ଆମେ ଗୁମ୍‌ସୁମ୍ ହୋଇ ମୁହଁ ତଳକୁ କରି ବସିଲେ, ସେ ନାନାଦି ଫିକର ଫାନ୍ଦିବେ, ଆମର ମନ ବହଲେଇବା ପାଇଁ । ବାହାରେ ବେଶି ରୋଷ ପ୍ରକଟ କରୁଥିବା ବଂଶୀବାବୁ ଓ ହରିବାବୁ ସହଜରେ ଶୀକାର ହୁଅନ୍ତି । ଦିନେ ସଂଧ୍ୟାବେଳେ ଆମେ ପ୍ରେସ୍‌ରେ ପହଞ୍ଚି ଦେଖିଲୁଁ, ଲକ୍ଷ୍ମୀଧର ବାବୁ ତାଙ୍କ ଚେୟାରରେ ବସିଛନ୍ତି । ଖୁସ୍ ମିଜାଜ, ଯେପରି ଆମ ଅପେକ୍ଷାରେ ଥିଲେ । ଗାଲେ ହସିଦେଇ କହିଲେ, ଆସିଗଲ, ବସବସ । ନବପତ୍ର ବାହାରିବାର ବିଳମ୍ବ ପାଇଁ ଆମେ କ୍ଷୁନ୍ନ ଥିଲୁଁ । ସେଇକଥା ବାଟରେ ଆଲୋଚନା କରିକରି ଆସିଥିଲୁଁ । ଆମମାନଙ୍କ ବଷଣ୍ଡ ବଦନ ଗୁଡିକୁ ଭୃକ୍ଷେପ ନକରି ସେ ଲେଖା ପ୍ୟାଡ୍‌ଟିଏ ବଢ଼ାଇଦେଇ କହିଲେ, 'ହିରିବାବୁ' ପଢ଼ିଲ ଦେଖି... ।'

କୁଣ୍ଠିତ ଭାବରେ କ'ଣ ଆଜ୍ଞା କହି ହରିବାବୁ 'ଅସୂର୍ଯ୍ୟଂପଶ୍ୟା' ଉଚ୍ଚାରଣ କରୁ ନକରୁଣୁ, ଲକ୍ଷ୍ମୀଧର ବାବୁ ପ୍ୟାଡ୍‌ଟା ତାଙ୍କ ହାତରୁ ନେଇଯାଇ କହିଲେ, ଦିଅ ଦିଅ, ମୁଁ ପଢୁଛି । ତୁମେମାନେ ଶୁଣ ।

ଅସୂର୍ଯ୍ୟଂପଶ୍ୟା

'ସେ ନୁହେଁ ଅସୂର୍ଯ୍ୟଂପଶ୍ୟା

ତୁମେ ତାକୁ ଦେଖିଚ ହୁଏତ

ପ୍ରତିଦିନ ହାତେ ଧରି ଖାତା ଆଉ ବହି

ଯାଏ ସେ ଇସ୍କୁଲେ ଏକା, ଅବା କେବେ ଛାତ୍ରୀର ଗହଣେ

ଆଲୋକର ଢେଉକାଟି, ଲାଜ ଲାଜ ମୟୀ ।'

ତୁମେ ତାକୁ ନିଶ୍ଚୟ ଦେଖିଚ

ହୁଏତ ବା ମନେ ରଖିନାହିଁ

ମନେ ବା ଯଦିଓ ଥାଏ, ମନେ ଥିବ ଶୁଭ୍ର ଶାଢ଼ି ତାର

ଶାଢ଼ିର ପଣତେ ଛପା, ମଣିପୁରୀ ନର୍ତ୍ତକୀର ଛବି

ପାଇପିଙ୍ଗ୍ ପାଡ୍ ଆଉ କୁମ୍ଭପକା ସରୁ ନାଲି ଗାର ।'

X X X

ଆଲୁଅର ଐଶ୍ୱର୍ଯ୍ୟ ଦେଖିଚ, ହାତରେ କି ପାରିଚ ମୁଠେଇ

ଫୁଲ ଗନ୍ଧେ ବିଭୋଳ ହୋଇଚ

ସେ ସୁରଭି ଛୁଇଁକି ପାରିଚ ?

ତୁମେ ତାକୁ ଦେଖିଚ ନିରେଖି, ସେ ଦେଖା କି ଛୁଇଁଚି ତା ମନ

କହିକି ପାରିବ ସିଏ, ସପ୍ନ ନା ବାସ୍ତବ, ଧ୍ୱଂସ ନା ସେ ସୃଜନର ବୀଜ ?

X X X

କବିତାଟି ସଂପୂର୍ଣ୍ଣ ପଢ଼ି ସାରିବା ପରେ, ହସି ହସି ଆଖିର ଇସାରାରେ ପଚାରିଲେ, କଅଣ ? ସେତେବେଳକୁ ମୁହଁ ରଂଗ ପଡ଼ି ଯାଇଥିଲା ଆମମାନଙ୍କର। ନବପତ୍ର କଥା ଉଠାଇବାକୁ ଯୁ ନଥିଲା। କାରଣ କବିତାଟି ଲେଖା ହୋଇଥିଲା ଆମକୁ ଇଙ୍ଗିତ କରି। ହିନ୍ଦୁସ୍ଥାନ ପ୍ରିଣ୍ଟର୍ସ ସାମ୍ନା ରାସ୍ତା ଆର ପଟେ ସରକାରୀ ବାଳିକା ବିଦ୍ୟାଳୟ। ଧଳା ଶାଢ଼ି ପିନ୍ଧା, ଗୋରା ତକତକ୍, ତନୁ ପାତଳୀ ଝିଅଟିଏ ଛାତିରେ ବହିଖାତା ଜାକି, ପ୍ରତିଦିନ ସ୍କୁଲକୁ ଯିବା ଆସିବା କରେ। ଚଉଦ ପନ୍ଦର ବୟସ, ହେଟ ବଦନ, ଧୀର ଚାଲି। ବାଟ ଛଡ଼ା ସେ କେବେ କୁଆଡ଼େ ମୁହଁ ଉଠାଇ ଦେଖେ ନାହିଁ। ଝିଅଟିର ପରିଚୟ ଆମେ ଜାଣିଥିଲୁଁ। ତାର ଚାଲିଚଳଣରେ ଆକୃଷ୍ଟ ହୋଇ କେବେ କେମିତି ଟୁପୁର ଟାପର କଥା ବି ହୋଇଛି ଆମ ଭିତରେ। ସେହି ନିତ୍ୟନୈମିତ୍ୟେ ଦୃଶ୍ୟ ସହିତ ଆମ ମଧ୍ୟରେ କାହାର ତରୁଣ ସୁଲଭ କୌତୂହଳ ଥିଲା ହୁଏତ। ଲକ୍ଷ୍ମୀଧର ବାବୁ ଯେ ତାହା ଲକ୍ଷ୍ୟ କରିଥିବେ, ଆମେ କେହି ଭାବିନଥିଲୁଁ। ଦୀର୍ଘ ବର୍ଷ ବିତିଯିବା ପରେ ବି ଆଜି ଇଛା ହେଉଛି, ଅପ୍ରକାଶିତ ସେ କବିତାଟି ଥରେ ପଢ଼ନ୍ତା କି ସେ ଝିଅଟି।

ତ୍ରୈମାସିକ ନବପତ୍ର ଗୋଟିଏ ବର୍ଷ ପୂରଣ କରି ଦ୍ୱିତୀୟ ବର୍ଷରେ ପଦାର୍ପଣ କରିଥାଏ। ନାନାଦି ଅସୁବିଧା ସହିତ ବିକ୍ରି ବିତରଣ କଷ୍ଟ ବଳି ପଡୁଥାଏ। ତଥାପି ଉତ୍ସାହରେ ଊଣା ନଥାଏ। ଅଭାବ ଅବହେଳା ହେତୁ ଦ୍ୱିତୀୟବର୍ଷର ଅପ୍ରେଲ ଓ ଜୁଲାଇ (୧୯୬୪) ସଂଖ୍ୟା ଏକତ୍ର ହୋଇ ବାହାରିଲା। ଆଉ ଯା' ହେଉ ନହେଉ ସାହିତ୍ୟ ଚକ୍ର ରୀତିମତ ଚାଲିଥାଏ। ରଜନୀବାବୁ ପ୍ରାୟ ଆସନ୍ତି। ଲକ୍ଷ୍ମୀଧର ବାବୁ ନିୟମିତ ଆସି ପାରନ୍ତି ନାହିଁ। ସେତେବେଳେ ସାହିତ୍ୟ ଚକ୍ରର ବିବରଣୀ ଲେଖିବା ଦାୟିତ୍ୱ ମୋ ଉପରେ ଥିଲା। ୧୯୬୪ ଅକ୍ଟୋବର

ମାସ ହେବ ବୋଧ ହୁଏ । ଦୂର୍ଗାପୂଜା ଯାଇନଥାଏ । ପରବର୍ତ୍ତୀ ସାହିତ୍ୟ ଚକ୍ର ହେବାର ଥାଏ ବଂଶୀଧର ମହାପାତ୍ରଙ୍କ ଘରେ । ସେ ରବିବାର ଦିନ ମୋର ଅନ୍ୟଆଡ଼େ ନିହାତି କାମ ଥିବାରୁ, ବଂଶୀ ବାବୁଙ୍କୁ ବିବରଣୀ ଖାତାଟା ଦେଇ ଚାଲିଗଲି । ସୋମବାର ଦିନ ସଂଧ୍ୟାରେ ଆସି ଜାଣିଲି ଯେ ଲକ୍ଷ୍ମୀଧର ବାବୁ କଲଚରାଲ ଏକାଡ଼େମୀରୁ ଇସ୍ତଫା ଦେଇ ଚାଲି ଯାଇଛନ୍ତି ।

କଥାଟା ଅବିଶ୍ୱାସନୀୟ ହେଲେ ବି ସତ୍ୟ । ସ୍ପଷ୍ଟ ଉତ୍ତର କାହାରି ଠାରୁ ମିଳିଲା ନାହିଁ । ନମିଳିବାର କାରଣ ବୋଧ ହୁଏ, ଆଗଧାଡ଼ି କର୍ମୀମାନଙ୍କ ମଧରେ ସେତେବେଳେ ମୁଁ ଥିଲି କନିଷ୍ଠ । ଆଉ.... ଲକ୍ଷ୍ମୀଧର ବାବୁଙ୍କର ପ୍ରିୟ ପାତ୍ର ବି ? ଅଧିକାଂଶ ତ ଥିଲେ ପ୍ରିୟପାତ୍ର ! ଯା' ହେଉ ଖବର କାଗଜରୁ ସମ୍ବାଦ ଓ ଅନ୍ୟମାନଙ୍କ ଠାରୁ ଯା' ଶୁଣିବାକୁ ମିଳିଲା, ଆଇ.ଏନ୍.ଟି.ୟୁ.ସି ବା ଭାରତୀୟ ଟ୍ରେଡ୍ ୟୁନିୟନ କଂଗ୍ରେସ ରାଉରକେଲା ଶାଖା ବିଦ୍ରୋହୀ ଗୋଷ୍ଠୀର ସଭାପତି ହୋଇଛନ୍ତି ଲକ୍ଷ୍ମୀଧର ନାୟକ । ରାଉରକେଲା ଆଇ.ଏନ.ଟି.ୟୁ.ସିର ସଂପାଦକ ତଥା ସର୍ବମୟ କର୍ତ୍ତା ଥିଲେ ଖିଲ୍‌ଜୀ ନାମକ ଜଣେ ବ୍ୟକ୍ତି । ତାଙ୍କ ମୁହଁ କଥାରେ ଷ୍ଟିଲ୍‌ପ୍ଲାଣ୍ଟ ଶ୍ରମିକ ରାଜନୀତି ଚାଲୁଥିଲା । ନିୟମ କାନୁନ କିଛି ନଥିଲା କହିଲେ ଚଳେ । ସେହି ଖିଲ୍‌ଜୀଙ୍କୁ, ସେକ୍ଟର-୧୯ରେ ଥିବା ୟୁନିୟନ ଅଫିସରୁ ବିତାଡ଼ିତ କରି ରାତାରାତ୍ ଏକ ନୂଆ କମିଟି ଗଠନ କରାହୋଇଥିଲା । ଏହି କନ୍ଦଳର ପୁରୋଭାଗ ନେତୃତ୍ୱରେ ଥିଲେ ବଟକୃଷ୍ଣ ପଣ୍ଡା । ବଟବାବୁ ଲକ୍ଷ୍ମୀଧର ବାବୁଙ୍କୁ ସେଥିରେ ସଂପୃକ୍ତ କରିଦେଇଥିଲେ । ସିଧା ସଳଖ ରାଜୀନତିରେ ଯୋଗ ନକରିବା ପାଇଁ କଲଚରାଲ ଏକାଡ଼େମୀର ବିଧାନ ଥିଲା । ଭିତରେ ଭିତରେ ବହୁ ଦିନରୁ କୁହୁଳୁ ଥିବା ଈର୍ଷା ବା ଅସନ୍ତୋଷ ଧୂପ ନିଆଁ ହୋଇ ଜଳି ଉଠିଲା ଏହି ମୌକାରେ । ପ୍ରଶ୍ନ ଉଠିବା ମାତ୍ରେ, ସାଭିମାନୀ ଲକ୍ଷ୍ମୀଧର ନାୟକ କଲଚରାଲ ଏକାଡ଼େମୀକୁ ଅଲବିଦା କରି ଚାଲିଗଲେ ।

ଲକ୍ଷ୍ମୀଧର ବାବୁଙ୍କ ପରେ କଲଚରାଲ ଏକାଡ଼େମୀର ସଭାପତି ଓ ନବପତ୍ରର ସଂପାଦକ ହେଲେ ରଜନୀ କାନ୍ତ ଦାସ । ସ୍ନେହ ଶ୍ରଦ୍ଧା ଓ ଅନ୍ତରୀଣ ଅସୂୟାର ଏହା ଆଉ ଏକ ନୂଆ ଅଧାୟ କଲଚରାଲ ଏକାଡ଼େମୀ ପାଇଁ । ରଜନୀ ବାବୁଙ୍କ ନେତୃତ୍ୱରେ ଭିନ୍ନ ଭାବ ଧାରା ଓ ବିଶ୍ୱାସ ଭାବନାରେ ଓଡ଼ିଆ ସଂସ୍କୃତି ଓ ସାହିତ୍ୟ କ୍ଷେତ୍ରରେ ଏକ ନୂଆ ଦିଗନ୍ତ ଉନ୍ମୁକ୍ତ କରିବା ପାଇଁ ପ୍ରୟାସ ହୋଇଥିଲା । ବହୁ ସଫଳତା ମଧ ମିଳିଥିଲା ସୃଜନ କ୍ଷେତ୍ରରେ ! ସେ ସାଂଗଠନିକ ଇତିହାସର କଥାବୃତ୍ତି ସତନ୍ତ୍ର । ଲକ୍ଷ୍ମୀଧର ନାୟକଙ୍କ ସଂପୃକ୍ତି ସେଥିରେ ନଥିଲା ।

ତେଣୁ ତାର ବ୍ୟାଖ୍ୟା ଅନାବଶ୍ୟକ ଏଠାରେ ।

ସବୁ ଇତିହାସ ପାଇଁ ପୃଷ୍ଠା ସବୁବେଳେ ସ୍ୱତନ୍ତ୍ର । ୧୯୯୬ରେ ରଜନୀ ବାବୁ ଅମଙ୍ଗ ହୋଇ ଛାଡ଼ି ଦେବାପରେ ନବପତ୍ର ଦାୟିତ୍ୱ ମୋ ଉପରେ ପଡ଼ିଥିଲା । ଖବର ପାଇ ଲକ୍ଷ୍ମୀଧର ବାବୁ ଚିଠି ଲେଖିଲେ ଏକ ସଂଗେ ଦୁଇ ଦୁଇ ଖଣ୍ଡ ପୋଷ୍ଟକାର୍ଡରେ । ନବପତ୍ରର ନୂଆ ସଂସ୍ଥାପନକୁ ଶୁଭେଚ୍ଛା ଜଣାଇବା ସହିତ ସେ ତାଙ୍କର ସ୍ମୃତିକଥା ଧାରାବାହିକ ଲେଖିବେ ବୋଲି ପ୍ରସ୍ତାବ ଦେଇଥିଲେ । କାହିଁକି କେଜାଣି କଥା ରଖି ପାରିଲେ ନାହିଁ । ପୂର୍ବବର୍ଷ, ଅର୍ଥାତ୍ ୧୯୯୫ରେ ରାଉରକେଲା ପୁସ୍ତକ ମେଳାକୁ ଆସିଥିଲେ ମୁଖ୍ୟ ଅତିଥି ହୋଇ । ମୁଁ ରାଉରକେଲା ଛାଡ଼ି ଭୁବନେଶ୍ୱରରେ ରହିବା କଥା ଜାଣିବା ପରେ, ମତେ ପାନ୍ଥ ନିବାସକୁ ଡକାଇ କହିଲେ, 'ବିଷ୍ଣୁ, ତୁମେ ଭୁବନେଶ୍ୱରରେ ରହିବ–ଭଲ ହେଲା । ମୋ ପାଖରେ ଗୁଡ଼ାଏ ତାତ୍‌ପର୍ଯ୍ୟପୂର୍ଣ୍ଣ କାଗଜପତ୍ର ଅଛି । ସେ ସବୁ ମୁଁ ତୁମ ଜିମା କରିଦେବି । ହୁଏତ କାମରେ ଲାଗିବ ଭବିଷ୍ୟତରେ । ଏପରି ଦାୟିତ୍ୱ ମୁଣ୍ଡାଇବାକୁ ମୋର ଉଭାପୋଡା ମୁଁ ଜାଣେଁ । କିନ୍ତୁ ମୋ ଉପରେ ତାଙ୍କର ଭରସା ମତେ ଆଶ୍ଚର୍ଯ୍ୟ ଚକିତ ଓ ଚିନ୍ତିତ କରିଥିଲି । ୧୯୯୮ ମାର୍ଚ୍ଚ ମାସରେ ମୁଁ କଟଣି ଯାଇଥିଲା ତାଙ୍କୁ ସାକ୍ଷାତ କରିବାକୁ । କିଶୋରୀ ମଣି ଭବନକୁ ଯାଇ ଶୁଣିଲି, ସେ ଦିଲ୍ଲୀରେ ରହୁଛନ୍ତି, ପୁଅ ପାଖରେ ।

୧୯୯୭ ମସିହା ପାଇଁ ଲକ୍ଷ୍ମୀଧର ବାବୁଙ୍କୁ ଅତିବଡ଼ି ଜଗନ୍ନାଥ ଦାସ ପୁରସ୍କାର ଦିଆଗଲା ତା ୨୧.୪.୧୯୯୯ ରେ । ସେ ଦିଲ୍ଲୀରୁ ଆସି ପୁରସ୍କାର ଗ୍ରହଣ କରି ପୁଣି ଫେରିଗଲେ ପୁଅ ପାଖକୁ । ସେତେବେଳେ ମୁଁ ଭୁବନେଶ୍ୱରରେ ଅନୁପସ୍ଥିତ ଥିବାରୁ ଭେଟି ପାରିଲି ନାହିଁ । ଆଶ୍ଚର୍ଯ୍ୟ କଥା, ଜଣେ ସାମ୍ବାଦିକ ବନ୍ଧୁଙ୍କ ଠାରୁ ମତେ ମିଳିଲା, ସୂଚନା ଭବନରେ ପ୍ରଦତ୍ତ ତାଙ୍କର ଅଭିଭାଷଣର ପ୍ରତିଲିପି । ମୁଁ ତାଙ୍କର ଶେଷ ସାକ୍ଷାତ ଲାଭକଲି ଏହି ପ୍ରତିଲିପିର ଶେଷାଂଶରେ ।

"ଏବେ ଆଖିକି ଦିଶୁନାହିଁ । କାନକୁ ଶୁଭୁନାହିଁ । ବିପ୍ଳବର ଛନ୍ଦ ଜିଭରେ ଲେଉଟୁ ନାହିଁ । ଏବେ ଏ ଦେଶଟା ଆପଣଙ୍କର । ଛିନ୍ନମସ୍ତା ଓଡ଼ିଶାରେ ଭାଷା ସାହିତ୍ୟ ବଞ୍ଚାଇବା ଦାୟିତ୍ୱ ଆପଣଙ୍କର । ମୋର ନିର୍ଜୀବ ସ୍ନାୟୁ ହାତ ଟେକି ଖାଲି ଆପଣଙ୍କଠୁ ବିଦାୟ ନେବି । ମୋର ଏହି ଶେଷ ସଭାମଞ୍ଚ ବକ୍ତବ୍ୟରେ ମୁଁ ଖାଲି ଏତିକି କହିବାକୁ ଚହେଁ ଯେ ଭାଷା ମରିଯାଉଛି । ସାହିତ୍ୟ ଲୋକଙ୍କଠାରୁ ଦୂରେଇ ଯାଉଛି । ସଂସ୍କୃତିରେ ବିଚ୍ଛିନ୍ନ ବୀଣାର ବିଦେଶୀ

ଝଙ୍କାର । ଯଦି ସମ୍ଭବ ହୁଏ ଭାଷା ସାହିତ୍ୟ- ସଂସ୍କୃତିକୁ ନୂତନ ସହସ୍ରାବ୍ଦରେ ସମ୍ଭାବନା ମୟ କରିବା ପାଇଁ ଜଗନ୍ନାଥ ଦାସର ବଂଶଧରମାନେ ଆଗେଇ ଆସନ୍ତୁ । ଓଡ଼ିଶା ଶବ୍ଦ-କୋଣାର୍କର ଅଷ୍ଟମ ଆଶ୍ଚର୍ଯ୍ୟ ଗଢ଼ନ୍ତୁ । ହୁଏତ ମୋର ଅନ୍ଧଆଖି ଆର ପାରିରେ ଉଜ୍ଜଳି ଉଠିବ ।"

ଆରପାରିର୍ ସପ୍ନ ବଡ଼ ଦୁରୂହ ଅଭିଳାଶ, ଅତି ଦୁର୍ଲଭ ବାସନା । ଓଡ଼ିଶା ଆକାଶରେ ଜହ୍ନ ଉଠେ ଅବଶ୍ୟ । କିନ୍ତୁ କିଏ ତୋଳିଆଣି ପରଷିଦେବ ହାତ ଆଞ୍ଜୁଳାରେ ? ଲକ୍ଷ୍ମୀଧର ନାୟକ ସପ୍ନର ମଣିଷ । ତାଙ୍କ ସପ୍ନ ସେମିତି ଥାଉ । ସପ୍ନ ଭଙ୍ଗ ହୋଇଗଲେ ସେ ନିରାକାର ହୋଇଯିବେ ସିନା !

***

# ରାଉରକେଲାରେ ରେନେସାଁର ଅଗ୍ରଦୂତ
# ଲକ୍ଷ୍ମୀଧର ନାୟକ

ବଂଶୀଧର ମହାପାତ୍ର

ଲକ୍ଷ୍ମୀଧର ନାୟକଙ୍କ ପରି ଜଣେ ଅନନ୍ୟ ବ୍ୟକ୍ତିଙ୍କ ସଂପର୍କରେ କିଛି ଲେଖିବା ମୋ ପକ୍ଷରେ ଧୃଷ୍ଟତା ହେବ। ସେ ଆଜି ଇହ ଜଗତରେ ନାହାନ୍ତି। ସେ ଥିଲେ ଏକାଧାରରେ ଜଣେ ଔପନ୍ୟାସିକ, କବି, ନାଟ୍ୟକାର, ସଂପାଦକ, ସାମ୍ବାଦିକ ଏବଂ ନିର୍ଦ୍ଦେଶକ। ତାଙ୍କ କର୍ମମୟ ଜୀବନର ଦୀର୍ଘ ପ୍ରାୟ ୧୫ବର୍ଷ ବିତିଗଲା ଏଇ ରାଉରକେଲାରେ। ୧୯୫୪ ମସିହା ମେ ମାସରେ ସେ ଆସି ପହଞ୍ଚିଥିଲେ ଏଠାରେ। ସେତେବେଳେକୁ ତାଙ୍କ ବୟସ ପ୍ରାୟ ଚାଳିଶ। ଏହା ପୂର୍ବରୁ ଟାଟାରେ ଥିବା ଲୁହା କାରଖାନା ସହିତ ସେ ଜଡ଼ିତ ଥିଲେ ବିଭିନ୍ନ ଭାବରେ। ଓଡ଼ିଆ ଭାଷାର ବହୁ ଉପନ୍ୟାସ ଓ କବିତା ଲେଖି ପ୍ରକାଶ କରି ଜଣେ ନିପୁଣ କବି ଓ ଔପନ୍ୟାସିକ ଭାବେ ସେ ସୁଖ୍ୟାତି ଅର୍ଜନ କରିବା ବ୍ୟତୀତ ବିହାରରେ ଥିବା ଓଡ଼ିଶାର ବିଛିନ୍ନାଞ୍ଚଳ ଓ ଓଡ଼ିଆଙ୍କ ସ୍ୱାର୍ଥ ରକ୍ଷା ପାଇଁ ଅଗ୍ରଣୀ ଭୂମିକା ଗ୍ରହଣ କରି ସେ ଖୁବ୍ ଲୋକପ୍ରିୟ ହୋଇ ପାରିଥିଲେ। ସେଠାରେ ନିଜ ପ୍ରେସରେ 'ବିଛିନ୍ନା' ନାମକ ଏକ ସାପ୍ତାହିକ ପତ୍ରିକା ପ୍ରକାଶ କରି ଓଡ଼ିଶା ତଥା ବିହାରର ଓଡ଼ିଆମାନଙ୍କ ମଧ୍ୟରେ ସାହିତ୍ୟ ଓ ସାଂସ୍କୃତିକ ବାତାବରଣକୁ ଉଜ୍ଜୀବିତ କରି ରଖିଥିଲେ। କିନ୍ତୁ ଏଥିପାଇଁ ସେ ବିହାର ସରକାରଙ୍କ ଚକ୍ଷୁଶୂଳ ହୋଇଥିଲେ। କାରଣ ତାହା ଏପରି ଏକ ସମୟ ଥିଲା ସେତେବେଳେ ସୀମା କମିଶନ ତାଙ୍କ କାମ ଆରମ୍ଭ କରିଥିଲେ। ବିହାରରେ ରହି ଯାଇଥିବା ବିଛିନ୍ନ, ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଓଡ଼ିଶାରେ ମିଶାଇବାର ସମସ୍ତ ସ୍ୱପ୍ନ କିନ୍ତୁ ତାଙ୍କର ପୂରଣ ହୋଇ ପାରିଲା ନାହିଁ। ତାଙ୍କ ପ୍ରେସ୍ ଉପରେ ବାରମ୍ବାର ପୋଲିସ ଓ ବିହାରୀ ଗୁଣ୍ଡାମାନଙ୍କ ଆକ୍ରମଣ ତଥା ଅତ୍ୟାଚର ତାଙ୍କ ଧନ ଜୀବନ ପ୍ରତି ବିପଦ ସୃଷ୍ଟି କଲା।

୧୯୫୪ ମସିହାରେ ଭାରତ ସରକାରଙ୍କ ପ୍ରଥମ ସରକାରୀ ଇସ୍ପାତ କାରଖାନା ରାଉରକେଲାରେ ପ୍ରତିଷ୍ଠିତ ହେବ ବୋଲି ସରକାରୀ ବିଜ୍ଞପ୍ତି ପ୍ରକାଶ ପାଇବା ପରେ ସେ ନିଜର ପ୍ରେସ ଧରି ରାଉରକେଲା ଚାଲି ଆସିଲେ। ପ୍ରାୟ ସାତ ମାସ ପୂର୍ବରୁ ମୁଁ ହୀରାକୁଦରୁ ଆସି ଏଠାରେ ଇସ୍ପାତ କାରଖାନା ପାଇଁ କାର୍ଯ୍ୟ କରୁଥାଏଁ। ୧୯୫୪ ଡିସେମ୍ବର ମାସରେ ପ୍ଲାଣ୍ଟସାଇଟ୍ ରୋଡ଼ ସମ୍ମୁଖସ୍ଥ ରୋଡ଼ କଡ଼ରେ ଥିବା ତାଙ୍କ ପ୍ରେସରେ ମୋର ପ୍ରଥମ ସାକ୍ଷାତ ହୁଏ ତାଙ୍କ ସହିତ। ନୂତନ ବର୍ଷର ଅଭିନନ୍ଦନ ଶୀର୍ଷକ ଏକ ମୁକ୍ତଛନ୍ଦ କବିତା ଲେଖି ତାହା

ଛପାଇବା ଉଦ୍ଦେଶ୍ୟରେ ମୁଁ ତାଙ୍କ ପାଖକୁ ଯାଇଥାଏଁ। ସେ ମୋ କବିତାଟି ପଢ଼ି ମୋତେ ବହୁତ ପ୍ରୋତ୍ସାହନ ଦେବା ସହିତ ବହୁତ କମ ପଇସାରେ ହଜାରେ କପି ଛାପି ଦେଲେ ଏବଂ ଅଧିକ କବିତା ଲେଖିବାକୁ ପରାମର୍ଶ ଦେଲେ। ବସ୍ତୁତଃ କବିତା, କ୍ଷୁଦ୍ରଗଳ୍ପ ଓ ଅନ୍ୟାନ୍ୟ ସାହିତ୍ୟ ଚର୍ଚ୍ଚାରେ ବହୁ ପ୍ରେରଣା ପାଇ ମୁଁ ତାଙ୍କୁ ମୋର ଗୁରୁଭାବେ ଗ୍ରହଣ କରିନେଲି। ଧୀରେ ଧୀରେ ସାହିତ୍ୟ, ସଂସ୍କୃତି, ନାଟକ କ୍ଷେତ୍ରରେ ଥିବା ମୋର କେତେକ ବଂଧୁଙ୍କୁ ମଧ ତାଙ୍କ ନିକଟକୁ ନେଇଗଲି। ଏହି କ୍ଷେତ୍ରରେ ଯୋଉମାନଙ୍କୁ ମୁଁ ନେଇଥିଲି ସେମାନେ ହେଲେ ହରେକୃଷ୍ଣ ଦାସ, କୈଳାସ ଚନ୍ଦ୍ର ମହାନ୍ତି, ଅନନ୍ତ ଚରଣ ଗଡ଼ନାୟକ ଓ ନଳିନୀକାନ୍ତ ଦାସ ପ୍ରଭୃତି।

ସେତେବେଳେ ମୋର ବୟସ ଥିଲା ମାତ୍ର ୨୩, ବଂଧୁମାନେ ଥିଲେ ପ୍ରାୟ ସମବୟସ୍କ। ଲକ୍ଷ୍ମୀଧର ବାବୁ ଥିଲେ ମୋ ଠାରୁ ପ୍ରାୟ ୧୭/୧୮ ବର୍ଷ ବଡ଼। ଅନ୍ୟ ଦିଗରୁ ସାହିତ୍ୟ କ୍ଷେତ୍ରରେ ସେ ପ୍ରାୟ ପ୍ରତିଷ୍ଠିତ ହୋଇ ସାରିଥିଲେ। ଏହି ଦୃଷ୍ଟିରୁ ତାଙ୍କର ପରାମର୍ଶ ତଥା ଉପଦେଶ ନେଇ କବିତା, ନାଟକ ଓ ସାହିତ୍ୟ-ସଂସ୍କୃତି କ୍ଷେତ୍ରରେ ତାଙ୍କରି ନେତୃତ୍ୱରେ ଆମେ କାମ କରିବୁଁ ବୋଲି ନିଷ୍ପତ୍ତି ନେଲୁଁ।

ଲକ୍ଷ୍ମୀଧର ବାବୁ ମୁଖ୍ୟତଃ ଥିଲେ ଜଣେ ରୋମାଣ୍ଟିକ କବି ଓ ଔପନ୍ୟାସିକ। ତାଙ୍କ ଉପନ୍ୟାସ ଓ କବିତା ପଢ଼ିଲେ ଯେ କେହି ବି ଏ କଥା ସ୍ୱୀକାର କରିବ। ଆମେମାନେ ଏହା ମଧ ଧରି ନେଇଥିଲୁଁ ଯେ ବୟସ ବଢ଼ିବା ସଂଗେ ସଂଗେ ଲକ୍ଷ୍ମୀଧର ବାବୁ ଧୀରେ ଧୀରେ ରୋମାଣ୍ଟିକତାକୁ ଅତିକ୍ରମ କରି ଲୋକ ଜୀବନର ସାଧାରଣ ସମସ୍ୟା ଭିତରକୁ ଚାଲି ଆସିବେ। ସୌଭାଗ୍ୟ କ୍ରମେ ଆମ ଚିନ୍ତାର ବଂଧୁ ରଜନୀ କାନ୍ତ ଦାସ, ବାଣୀପଦ ଦାଶ, ଗୋକୁଳ କିଶୋର ଦାସ, ବିଷ୍ଣୁ ରାଉତରାୟ, ବ୍ରଜ ବଲ୍ଲଭ ପ୍ରଧାନ ଓ ଅନ୍ୟ କେତେଜଣ ସେତେବେଳେ ଆସି ଆମ ସହିତ ଯୋଗ ଦେଲେ। ଏ ସମସ୍ତଙ୍କୁ ନେଇ ଗଢ଼ା ହେଲା କଳା, ସାହିତ୍ୟ ଓ ସଂସ୍କୃତି ଅନୁଷ୍ଠାନ 'କଲଚରାଲ ଏକାଡ଼େମୀ'। ଏହାର ପ୍ରଥମ ସଭାପତି ଓ ସାଧାରଣ ସଂପାଦକ ଭାବେ ଦାୟିତ୍ୱ ନେଲେ ଯଥାକ୍ରମେ ଲକ୍ଷ୍ମୀଧର ନାୟକ ଓ ରଜନୀକାନ୍ତ ଦାସ। ୧୯୬୧ ଶେଷ କିମ୍ବା ୧୯୬୨ ମସିହାରେ ଆରମ୍ଭ ହୋଇଥିବା ଏହି ଅନୁଷ୍ଠାନ ପକ୍ଷରୁ ପ୍ରକାଶିତ ହେଲା ସାହିତ୍ୟ ପତ୍ରିକା 'ନବପତ୍ର' ଯାହା ଏବେ ବି ଚାଲିଛି।

ତା ପୂର୍ବରୁ ୧୯୫୫ ମସିହାରେ ଲକ୍ଷ୍ମୀଧର ବାବୁଙ୍କ ନିର୍ଦ୍ଦେଶନାରେ ଆମେ ମଞ୍ଚସ୍ଥ କଲୁଁ ସୁଖ୍ୟାତି ଅର୍ଜନ କରିଥିବା ଐତିହାସିକ ନାଟକ 'ବକ୍ସି ଜଗବଂଧୁ'। ଏହା ଦର୍ଶକ ମହଲରେ ବେଶ ଆଦୃତ ହେଲା। ଏହା ପୂର୍ବରୁ ୧୯୫୪ ମସିହାରେ ମୁଁ ଅନ୍ୟ କେତେକ ବଂଧୁଙ୍କୁ ସହିତ ମିଶି ପାନପୋସରେ ଦୁର୍ଗାପୂଜା ଏବଂ ଏହି ଉପଲକ୍ଷେ 'ଦଶଭୂଜା' ଶୀର୍ଷକ ଏକ ନାଟକ ମଞ୍ଚସ୍ଥ

କରାଇଥିଲି । କିନ୍ତୁ ପରେ ଆମେ ଠିକ୍ କଲୁଁ ଯେ ଏ ସମସ୍ତ ସାଂସ୍କୃତିକ କାର୍ଯ୍ୟକ୍ରମ ଜରିଆରେ ଏକ ଉନ୍ନତ ପରିବେଶ ପାଇଁ ଲକ୍ଷ୍ମୀଧର ବାବୁଙ୍କ ଅଭିଜ୍ଞତା ଏକାନ୍ତ ଆବଶ୍ୟକ । ବକ୍ସି ଜଗବଂଧୁ ନାଟକରେ ତତ୍କାଳୀନ ରାଉରକେଲାର ଅନ୍ୟାନ୍ୟ ବିଶିଷ୍ଟ ବ୍ୟକ୍ତି ବିଶେଷ ମଧ ଆମ ସହିତ ସହଯୋଗ ଦେଲେ । ସେମାନଙ୍କ ମଧ୍ୟରେ ନେତୃସ୍ଥାନୀୟ ଓକିଲ ତଥା ଜନନେତା ଧନଞ୍ଜୟ ମହାନ୍ତି ବକ୍ସି ଜଗବଂଧୁ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲା ବେଳେ ପୁରୀ ଗଜପତି ଭୂମିକାରେ ରେଭେନ୍ୟୁ ଅଫିସର କ୍ଷେତ୍ରମୋହନ ମଂଗରାଜ, ଦେବାନ କୃଷ୍ଣଚନ୍ଦ୍ର ଭୂମିକାରେ ଶ୍ରମ ଅଧିକାରୀ କ୍ଷେତ୍ରମୋହନ ପାଣିଗ୍ରାହୀ, କାହ୍ନୁଚରଣ ସଖୋଲ ମେଜର ଫ୍ଲେଚର, ଲକ୍ଷ୍ମୀନାରାୟଣ ବେହେରା କର୍ଣ୍ଣେଲ ହାରକୋର୍ଟ ଓ ହରେକୃଷ୍ଣ ଦାସ ଚରଣ ପଟ୍ଟନାୟକ ଭୂମିକାରେ ଅଭିନୟ କରିଥିଲେ । ସଂଗୀତ ନିର୍ଦ୍ଦେଶନା ଦେଇଥିଲେ ତତ୍କାଳୀନ କୁଆଁରମୁଣ୍ଡାର ନାଗ୍ରା ଜମିଦାର ଶିବନାରାୟଣ ସିଂ ମହାପାତ୍ରଙ୍କ ବ୍ୟକ୍ତିଗତ ସଚୀବ ରାସ ବିହାରୀ ସିଂହଦେଓ । ରାଉରକେଲାର ଏବର ଦ୍ୱେଲି ମାର୍କେଟ ନିକଟରେ ଏକ ସତନ୍ତ୍ର ଅସ୍ଥାୟୀ ରଂଗମଞ୍ଚରେ ଏହି ନାଟକ ମଞ୍ଚସ୍ଥ ହେଲା ପରେ ଇସ୍ପାତ କାରଖାନାର ମୁଖ୍ୟ ସିକ୍ୟୁରିଟି ଅଫିସର ତଥା ଟାଉନ ଏଡ୍‌ମିନିଷ୍ଟ୍ରେଟର ଭାବେ ଯୋଗ ଦେଇଥିବା ନରସିଂହ ରଥଙ୍କ ଅନୁରୋଧ କ୍ରମେ ଅଧିକ ଦୁଇଦିନ ଏହାକୁ ମଞ୍ଚସ୍ଥ କରାଗଲା । ନାଟକ ନିର୍ଦ୍ଦେଶକ ଭାବେ ଲକ୍ଷ୍ମୀଧର ବାବୁ ଖୁବ୍ ପ୍ରଶଂସିତ ହେଲେ । ଏହା ପରେ 'ପରକଲମ', ବୈରାଗୀର ସଂସାର' ପ୍ରଭୃତି ନାଟକ ମଧ ସେଇ ପୁରୁଣା ରାଉରକେଲାର ଭିନ୍ନ ଭିନ୍ନ ସ୍ଥାନରେ ମଞ୍ଚସ୍ଥ କରାଗଲା । ଲକ୍ଷ୍ମୀଧର ବାବୁ ନିଜେ ତିନୋଟି ନାଟକ 'ଲାଲ ରବୁକ' 'ଧର୍ମପନ୍ନୀ ଓ 'ଜମିଦାର' ରଚନା କରି ପ୍ରକାଶ କରିଥିଲେ । ଏଗୁଡିକ ବିଭିନ୍ନ ଅନୁଷ୍ଠାନ ଓ ସଂସ୍ଥା ତରଫରୁ ବିଭିନ୍ନ ସ୍ଥାନରେ ମଞ୍ଚସ୍ଥ ହୋଇଥିଲା ।

ଲକ୍ଷ୍ମୀଧର ବାବୁଙ୍କ ସଂପାଦନାରେ କଲଚରାଲ ଏକାଡ଼େମୀ ପକ୍ଷରୁ 'ନବପତ୍ର' ନାମକ ଏକ ତ୍ରୟୋମାସିକ ସାହିତ୍ୟ ପତ୍ରିକା ୧ ୯ ୬ ୨ ରେ ପ୍ରକାଶିତ ହେଲା । ଏଥିରେ ଏକାଡ଼େମୀର ଯୁବ ଲେଖକମାନଙ୍କ ବ୍ୟତୀତ ଓଡ଼ିଶାର ପ୍ରତିଷ୍ଠିତ ଲେଖକ ଓ କବିମାନଙ୍କ ଲେଖା ପ୍ରକାଶ ପାଉଥିଲା । ଲକ୍ଷ୍ମୀଧର ବାବୁ ଜଣେ ସୁପ୍ରତିଷ୍ଠିତ କବି ଓ ସାହିତ୍ୟିକ ଭାବରେ ଅନୁରୋଧ କରୁଥିବାରୁ ସେମାନେ ଲେଖା ପଠାଉଥିଲେ । ଫଳରେ ଅଳ୍ପଦିନ ଭିତରେ 'ନବପତ୍ର' ଓଡ଼ିଶାର ଏକ ଉଚ୍ଚାଙ୍ଗ ସାହିତ୍ୟ ପତ୍ରିକା ଭାବରେ ଆଦୃତ ହେଲା ।

କେବଳ ନବପତ୍ର ନୁହେଁ ସେ ନିଜର ଏକ ସାପ୍ତାହିକ ପତ୍ରିକା ପ୍ରଥମେ 'ଆଜିର ଡାକ' ଓ ପରେ 'ରାଉରକେଲା ଡାକ' ସଂପାଦନା କରୁଥିଲେ । ଏହା ମଧ ବେଶ ପାଠକୀୟତା ହାସଲ କରିଥିଲା । ୧ ୯ ୫ ୯ ମସିହାରୁ ତାଙ୍କ ସଂପାଦନାରେ 'ରାଉରକେଲା ପୋଷ୍ଟ'

ନାମରେ ଏକ ଇଂରାଜୀ ସାପ୍ତାହିକ ପ୍ରକାଶ ପାଇଥିଲା । ଓଡ଼ିଆ ଭାଷାରେ ତାଙ୍କର ଅନନ୍ୟ ଦଖଲ ଥିବା ତାଙ୍କ କବିତା ଓ ଉପନ୍ୟାସ ପଢ଼ିଥିବା ଲୋକେ ସ୍ୱୀକାର କରୁଥିଲେ । କିନ୍ତୁ ଇଂରାଜୀ ଭାଷାରେ ମଧ ଯେ ତାଙ୍କର ଯଥେଷ୍ଟ ଦଖଲ ଥିଲା ଏକଥା 'ରାଉରକେଲା ପୋଷ୍ଟ' ପ୍ରମାଣ କରିଦେଲା । ଏହି ପତ୍ରିକାର ସହଯୋଗୀ ସଂପାଦକ ଭାବରେ (ଏସୋସିଏଟ ଏଡିଟର) ମୁଁ ପ୍ରାୟ ସବୁ କାମ ସମ୍ଭାଳି ନେଉଥିଲି । ସେ କେବଳ ସଂପାଦକୀୟଟି ଲେଖୁଥିଲେ । ଏହି ସୁଯୋଗରେ ପ୍ରେସର ସାଧାରଣ ପରିଚାଳନା କାର୍ଯ୍ୟ ମୁଁ ତାଙ୍କଠି ପ୍ରେସରୁ ଶିଖିଥିଲି । ତାହା ପରବର୍ତ୍ତୀ ସମୟରେ ମୋତେ ମୋ ନିଜର ପ୍ରେସ ଓ ସାପ୍ତାହିକ ସଂବାଦପତ୍ର ପ୍ରକାଶ କରିବା ସହିତ ପେଶାଦାରୀ ସାମ୍ବାଦିକତା କରିବାରେ ଅନେକ ସାହାଯ୍ୟ କରିଥିଲା ।

ଏକାଡ଼େମୀ ପକ୍ଷରୁ ସାପ୍ତାହିକ ସାହିତ୍ୟ ଚକ୍ର,କବିତା ଆବୃତ୍ତି ଓ ସାହିତ୍ୟ ଆଲୋଚନା ପ୍ରଭୃତି କ୍ରମାଗତ ଭାବରେ ଚାଲିବା ଫଳରେ ନୂତନ ଭାବେ ଗଢ଼ି ଉଠୁଥିବା ଶିଳ୍ପ ସହରର ସଚେତନ ସମାଜରେ ଏକ ସାଂସ୍କୃତିକ ଜାଗରଣର ପରିବେଶ ସୃଷ୍ଟି ହେଲା । ଏହା କ୍ରମଶଃ ବୃଦ୍ଧି ପାଇଲା ଏବଂ ଇସ୍ପାତ ନଗରୀ ଅଞ୍ଚଳରେ ସମାଜ ସଚେତନ ଶ୍ରମିକ କର୍ମଚାରୀଙ୍କ ମଧ୍ୟରେ ଏକାଡ଼େମୀ ପକ୍ଷରୁ କଳା, ସାହିତ୍ୟ ଓ ସାଂସ୍କୃତିକ କାର୍ଯ୍ୟକ୍ରମ ଅଧିକରୁ ଅଧିକ ଅନୁଷ୍ଠିତ ହେଲା । ୧୯୬୪ ମସିହାରେ ଲକ୍ଷ୍ମୀଧର ବାବୁ ଏକାଡ଼େମୀର ସଭାପତି ଓ ନବପତ୍ରର ସଂପାଦକ ପଦରୁ ଇସ୍ତଫା ଦେଇ ରାଉରକେଲା ଛାଡ଼ି ଚାଲିଗଲେ । ସେତେବେଳେ ସେ କିଛିକାଳ ପି.ଟି.ଆଇ.ର ସ୍ଥାନୀୟ ସଂବାଦଦାତା ଭାବେ କାମ କରିଥିଲେ । ସେତେବେଳେ ଇସ୍ପାତ କାରଖାନାର ଜେନେରାଲ ମେନେଜର ଏସ.ଟି.ରାଜା ତାଙ୍କ କାର୍ଯ୍ୟକୁ ବେଶ ସମ୍ମାନ ଦେଉଥିଲେ । ବହୁ ଦୈନିକ ସଂବାଦପତ୍ରରେ ତାଙ୍କ ପ୍ରେରିତ ସଂବାଦ ପ୍ରକାଶ ପାଉଥିଲା ।

ସଂଗୀତ ପ୍ରତି ଲକ୍ଷ୍ମୀଧର ବାବୁଙ୍କ ବଡ଼ ଦୁର୍ବଳତା ଥିଲା । କେଉଁଠି ସଂଗୀତ ଆସର ହେଉଥିଲେ ସେଠି ପହଞ୍ଚି ଯାଉଥିଲେ । ସେପରି ପରିବେଶ ସୃଷ୍ଟିହେଲେ ସେ ନିଜେ ମଧ ହାରମୋନିଅମ ଧରି ବସିଯାଉଥିଲେ ତନ୍ମୟ ହୋଇ । କାନ୍ତ କବି ଲକ୍ଷ୍ମୀକାନ୍ତଙ୍କ ରଚିତ "ସବୁଥିରୁ ବଞ୍ଚିତ କରି କେଉଁ ଯଶବାନା ଉଡ଼ାଇବ ହେ"ଟାକୁ ଗାଇବାର ଆମେ ପ୍ରାୟ ଦେଖୁଛୁଁ ।

ଓଡ଼ିଆରେ ଆଗରୁ ଗଜଲ ନଥିଲା । ଏବେ ବି ହୋଇଚି କି ନା ମୁଁ ଜାଣେନା । କିନ୍ତୁ ଲକ୍ଷ୍ମୀଧର ବାବୁ ପ୍ରାୟ ୪୦ବର୍ଷ ପୂର୍ବରୁ କେତେକ ଗଜଲ ଲେଖି ତାକୁ ସ୍ୱର ଦେଇ ପରିବେଷଣ କରିବା ତଥା ସେଥିରେ ସି.ଡି ଓ କ୍ୟାସେଟ ପ୍ରସ୍ତୁତ କରାଇବା ଦିଗରେ ଉଦ୍ୟମ ଆରମ୍ଭ କରିଥିଲେ । ଏ ସମ୍ପର୍କରେ ମଧ ସେ ଶାସ୍ତ୍ରୀୟ ସଂଗୀତର ସ୍ୱନାମଧନ୍ୟା ଗାୟିକା ସୁନନ୍ଦା ପଟ୍ଟନାୟକଙ୍କ ସହ ଆଲୋଚନା କରିଥିଲେ । ସୁନନ୍ଦା ଦେବୀ ଥରେ ଏକ କାର୍ଯ୍ୟକ୍ରମରେ

ଯୋଗ ଦେବାକୁ ରାଉରକେଲା ଆସିଥିଲା ବେଳେ ତତକାଳିନ ଇସ୍ପାତ ହୋଟେଲରେ ଏ ବିଷୟରେ ଆଲୋଚନା କରିଥିଲେ । ମୁଁ ମଧ ତାଙ୍କ କହିବାନୁଯାଇ ତାଙ୍କ ସହିତ ଯାଇଥିଲି । କିନ୍ତୁ ସେ ଦିଗରେ ଆଉ ଆଗେଇ ହେଲା ନାହିଁ । କାରଣ ସୁନନ୍ଦା ଦେବୀ କଲିକତାରେ ଅବସ୍ଥାନ କରୁଥିଲେ । ଏ ବିଷୟରେ ସେ ପରେ ସଙ୍ଗୀତଜ୍ଞ ଅକ୍ଷୟ ମହାନ୍ତିଙ୍କ ସହିତ ବି ଆଲୋଚନା କରିଥିଲେ ବୋଲି ମୋତେ କହୁଥିଲେ । କିଛି ନା କିଛି ଗୋଟାଏ ନୂଆକାମ କରିବାରେ ତାଙ୍କର ଆଗ୍ରହ ଥିଲା । ସେ ନାଟକ ପାଇଁ ଥରେ ପ୍ଲଟଟିଏ ମନସ୍ଥ କରି ନେଲେ ଲେଖା ସାରିବାକୁ ତାଙ୍କୁ ବେଶୀ ସମୟ ଲାଗୁ ନ ଥିଲା । ଶବ୍ଦ ପ୍ରୟୋଗରେ ତାଙ୍କ ହାତର ଯାଦୁ ସମସ୍ତଙ୍କୁ ଜଣାଥିଲା । ଥରେ କୌଣସି ସୂତ୍ରରେ ଏକ ପ୍ଲଟ ପାଇ ସେ 'କଳା ଓ କଳଙ୍କ' ନାମରେ ଏକ ନାଟକ ଡାକି ଦେଇଗଲେ ଏବଂ ମୁଁ କ୍ଷିପ୍ରଗତିରେ ତାହା ଲେଖିଲି । ଦୁଇଟି ଦିନ ଭିତରେ ମାତ୍ର ୪/୫ଘଣ୍ଟାର ପରିଶ୍ରମ ଫଳରେ ଏକ ସୁନ୍ଦର ନାଟକ ଲେଖା ହୋଇଗଲା । ପରେ ବଂଧୁ ଭବାନୀ ପଣ୍ଡା ଓ ଦୁର୍ଗାଦାସଙ୍କ ଦ୍ୱାରା ତାହା ସିଭିକ ସେଣ୍ଟର ( ? )ରେ ମଞ୍ଚସ୍ଥ ହେଇ ଉଚ୍ଚ ପ୍ରଶଂଶିତ ହୋଇଥିଲା ।

ଲକ୍ଷ୍ମୀଧର ବାବୁ ଥିଲେ ଦୃଢ଼ମନା ଓ ଉଦାରମନା । ମୋର କବିତା ଆବୃତ୍ତି, ସଂଗଠନର ଦକ୍ଷତା ଓ କ୍ଷୁଦ୍ର ଗଳ୍ପ ରଚନା ଶୈଳୀକୁ ସେ ଖୁବ୍ ପସନ୍ଦ କରୁଥିଲେ । ଥରେ ଏକ କ୍ଷୁଦ୍ର ଗଳ୍ପ ପଢ଼ି ତାଙ୍କୁ ଶୁଣାଇଲି ଏବଂ ଏହାର ନାମକରଣ କରିବାକୁ ତାଙ୍କୁ ଅନୁରୋଧ କଲି । ସେ ଅତି ଆନନ୍ଦରେ ତାର ଶୀର୍ଷକ ଦେଇଥିଲେ 'ପୃଥିବୀର ଶ୍ରେଷ୍ଠ ଉପନ୍ୟାସ ।' ତାହା ନବପତ୍ରରେ ପ୍ରକାଶ ପାଇଥିଲା । ସେ ଯେଉଁ କାମ କରିବାକୁ ନିଷ୍ପତ୍ତି ନେଉଥିଲେ ଖୁବ୍ ଶୀଘ୍ର ତାକୁ କରି ପକାଉଥିଲେ ।

ସେ ଥିଲେ ଏକାଧାରରେ ଜଣେ ଦୂରଦ୍ରଷ୍ଟା, ବଂଧୁ ବତ୍ସଳ, ଗୁଣଗ୍ରାହୀ, ଦରଦୀ ଓ ସ୍ନେହାନୁଭୂତିଶୀଳ ଆଦର୍ଶ ସ୍ଥାନୀୟ ବ୍ୟକ୍ତି । ତାଙ୍କ କର୍ତ୍ତବ୍ୟ ନିଷ୍ଠା, ଆଦର୍ଶ ଓ ସାଂବାଦିକ ପ୍ରତିଭା ମୋତେ ବହୁ ଭାବେ ପ୍ରଭାବିତ କରିଛି । କବିତା ଆବୃତ୍ତି ଯେ ଗୋଟାଏ କଳା ଏ କଥା ମୁଁ ତାଙ୍କ ଠାରୁ ଶିଖିଲି । ରାଉରକେଲାକୁ ତାଙ୍କର ଅବଦାନ ଅତୁଳନୀୟ । ଆନୁଷ୍ଠାନିକ ସାହିତ୍ୟର ନବଦିଗନ୍ତ ରାଉରକେଲାରେ ତାଙ୍କରି ଦ୍ୱାରା ହିଁ ଉନ୍ମୋଚିତ ହୋଇଥିଲା । ତାଙ୍କର ଭାଷା ପ୍ରୀତି, ଜାତୀୟତା ଏବଂ ସର୍ବୋପରି ଅଖଣ୍ଡ ଓଡ଼ିଶାର ସପ୍ନ ବରାବର ଆମର ସ୍ମୃତିର ପାଥେୟ ହୋଇ ରହିଥିବ ।

* * * * *

# ଏକଦା " ଉଦ୍‌ଭ୍ରାନ୍ତ"

ବିଭୂତି ପଟ୍ଟନାୟକ

## ।। ଏକ ।।

ଉଦ୍‌ଭ୍ରାନ୍ତ ଲକ୍ଷ୍ମୀଧର ନାୟକଙ୍କ ପ୍ରଥମ ଉପନ୍ୟାସ- ଏକଥା ଭାବିଲେ ବିସ୍ମୟ ଲାଗେ। ବିସ୍ମୟ ଉପନ୍ୟାସ କଥାବସ୍ତୁର ଆକର୍ଷଣୀୟତା କିମ୍ବା ନୂତନତ୍ୱ ପାଇଁ ନୁହେଁ, ବିସ୍ମୟ ଉପନ୍ୟାସର ଆକାର ଏବଂ ପ୍ରକାର ଲାଗି। ଡିମାଇ ସାଇଜ୍‌ର ଛୋଟ ଛୋଟ ପାଇକା ଅକ୍ଷରରେ ଛାପା ତିନିଶହ ଏକାବନ ପୃଷ୍ଠା ବିଶିଷ୍ଟ ଏଇ ଉପନ୍ୟାସର ୧୯୮୪ ମସିହା ସଂସ୍କରଣ ଦେଖି ବିଶ୍ୱାସ କରିବାକୁ ଖୁବ୍ ଖୁସି ଲାଗେ ଯେ ଏହା ଜଣେ ଓଡ଼ିଆ ଔପନ୍ୟାସିକଙ୍କର ପ୍ରଥମ ଉପନ୍ୟାସ ଏବଂ ମୋର ଜନ୍ମର ଦୁଇ ତିନିବର୍ଷ ଆଗରୁ ଏ ଶତାବ୍ଦୀର ତୃତୀୟ ଦଶକର ଆଦ୍ୟ ଭାଗରେ ଛପା ହୋଇଥିଲା।

ନା, କିଶୋର ବୟସରେ ଲକ୍ଷ୍ମୀଧର ବାବୁଙ୍କ ଯେଉଁ ଉପନ୍ୟାସଟି ମୁଁ ପଢ଼ି ପ୍ରଥମେ ଅଭିଭୂତ ହୋଇଥିଲି, ତାର ନାମ 'ଉଦ୍‌ଭ୍ରାନ୍ତ ନୁହେଁ' ; "ଭୁଲିଲ ସତେ ସଖୀ"। ତାପରେ 'ବର୍ଷାର ଶେଷ' ହା'ରେ ଦୁର୍ଭାଗା ଦେଶ" ପ୍ରଭୃତି ଉପନ୍ୟାସ ମୋ ଆଖିରୁ ନିଦ୍ରା ଅପହରଣ କରି ନେଇଥିଲା। କିନ୍ତୁ ତାଙ୍କର ଯେଉଁ ବହି ମୋ ମନରେ ଭାବାନ୍ତର ଆଣିଥିଲା, ତାହା ଉପନ୍ୟାସ ନୁହେଁ; ଖଣ୍ଡେ ନାଟକ "ଲାଲ ଯବୁକ"!

ଲକ୍ଷ୍ମୀଧର ନାୟକ ଓଡ଼ିଆ ସାହିତ୍ୟରେ ଏକ ଅବହେଳିତ, ବିସ୍ମୟକର ପ୍ରତିଭା। ନାଟକ, ଉପନ୍ୟାସ, କାବ୍ୟ, କବିତା, ସାମ୍ବାଦିକତା କ୍ଷେତ୍ରରେ ସେ ତାଙ୍କର ଅମଳିନ ସ୍ୱାକ୍ଷର ଅଙ୍କନ କରି ଯାଇଛନ୍ତି। ସମୟର ଚୌକାଠରେ ଠିଆହୋଇ ହାଇ ମାରୁଥିବା ଭଳି କ୍ଳାନ୍ତ ବ୍ୟକ୍ତି ସେ ନଥିଲେ, ନୂତନ ଜୀବନ ଶକ୍ତି ନୂତନ ପରିକଳ୍ପନାରେ ତାଙ୍କର ସୃଷ୍ଟିର ଜଗତ ବର୍ତ୍ତମାନ ସୁଦ୍ଧା ରକ୍ତିମ ହୋଇ ରହିଥିଲା। ଅନ୍ୟ ବୟସ୍କମାନଙ୍କ ଭଳି ତାଙ୍କ ଉପନ୍ୟାସ ରକ୍ତହୀନତା ଭୋଗ କରୁନଥିଲା। ଅନ୍ତତଃ "ମୋ ସପ୍ନର ସହର" ପଢ଼ିଥିବା ଯେ କୌଣସି ପାଠକର ଏହାହିଁ ଅନୁଭୂତି।

## ।। ୨ ।।

ଯେଉଁ ସମୟରେ ଲକ୍ଷ୍ମୀଧରବାବୁ ଉପନ୍ୟାସ ଲେଖା ଆରମ୍ଭ କରିଥିଲେ, ସେ ସମୟରେ ଓଡ଼ିଆ ଉପନ୍ୟାସ ଆଦର୍ଶବାଦର ରାସ୍ତାଛାଡ଼ି କ୍ରମଶଃ ବାସ୍ତବବାଦର ପଥ ଅନ୍ୱେଷଣ କରୁଥିଲା। ଉଚ୍ଚଶିକ୍ଷାର ବିସ୍ତାର, ଓଡ଼ିଆ ଜାତୀୟତାବୋଧ, ସ୍ୱାଧୀନତା ଆନ୍ଦୋଳନର ଆଗ୍ନେୟ ଉତ୍ତାପ-ଏସବୁ କିଛି ମିଳିମିଶି ବ୍ୟକ୍ତି ଜୀବନକୁ ଶାଣିତ ଏବଂ ସମାଜ

ଜୀବନକୁ ଅଧିକ ଜଟିଳ କରିଦେଇଥିଲା । ବିଂଶ ଶତାବ୍ଦୀର ଏଇ ଚତୁର୍ଥଦଶକ ଥିଲା ପ୍ରକୃତରେ ଓଡ଼ିଆ ଉପନ୍ୟାସ ସାହିତ୍ୟର ପଥ ପରିବର୍ତ୍ତନର ସନ୍ଧି- ସମୟ । ଓଡ଼ିଆ ତାର ସ୍ୱତନ୍ତ୍ର ଭୌଗୋଳିକ ଅସ୍ତିତ୍ୱ ହରାଇଲା ପରେ ପୁଣି ନିଜକୁ ଖୋଜି ପାଇବା ପାଇଁ ଆନ୍ଦୋଳନରେ ମାତିଥିଲା; ଓଡ଼ିଆ ତାର ପୂର୍ବ ବାଣିଜ୍ୟିକ ଗୌରବ ହରାଇ ଇଂରେଜୀ ପ୍ରଶାସନର ନାଲିଫିତା ଭିତରେ ଅଥବା କଲିକତା-ଆସାମ-ରେଙ୍ଗୁନର କଳ କାରଖାନା, ଚାହା ବଗିଚାରେ କୁଲି-କାମର ଅନ୍ୱେଷଣ କରୁଥିଲା । କୋଣାର୍କ-ପୁରୀ ମନ୍ଦିର ନିର୍ମାଣ କରିଥିଲେ, ସେଠାରେ ପାଠ ପଢୁଥିବା ଓଡ଼ିଆ ଯୁବକ-ଯୁବତୀ ମୂର୍ତ୍ତିଗଠନ ଶିଳ୍ପ ବଦଳରେ ଆଉ ଏକ ନୂତନ ଶିଳ୍ପୀରେ ମାତିଥିଲେ- ସେ ଶିଳ୍ପର ନାମ ପ୍ରେମ ।

'ଉଦ୍‌ଭ୍ରାନ୍ତ' ଉପନ୍ୟାସର ନାୟକ ଉମାକାନ୍ତ ଥିଲା ଏଇଭଳି ଜଣେ ପ୍ରେମିକ ଶିଳ୍ପୀ । ଆରତି ନାମକ ଏକ ତରୁଣୀ ସହିତ ସେ ବିଷମ ପ୍ରେମରେ ମାତିଥିଲା । ଆରତି ସହିତ ଦୁଇଥର ଦୃଷ୍ଟି ବିନିମୟ ହେବାପରେ ତା ମନଭିତରେ ଏକ ଆଶ୍ଚର୍ଯ୍ୟତମ ତୃପ୍ତି ଓ ଅଭୁତପୂର୍ବ ନୂତନତା ଆସି ଯାଇଥିଲା । ମାଦକ ଦ୍ରବ୍ୟ ଖାଇଲା ପରି ସେ ନିଜ ଅଜଣାତରେ ପୁଲକିତ ଓ ରୋମାଞ୍ଚିତ ହୋଇ ପକ୍ଷୀପରି ଡେଣା ମେଲାଇ କେଉଁ ଦୂର ଆକାଶକୁ ଉଡିଯିବାକୁ ଉଦ୍‌ଗ୍ରୀବ ହୋଇ ଉଠିଥିଲା । କିନ୍ତୁ ଆରତିକୁ ସାଙ୍ଗରେ ଧରି ପ୍ରଣୟର ସେ କଳ୍ପଲୋକକୁ ଉଡିଯିବା ଆଗରୁ ଉମାକାନ୍ତର ବନ୍ଧୁ ସୁରେଶର ଈର୍ଷାତୁର ଚକ୍ରାନ୍ତ ଫଳରେ ଆରତୀ ଆଉ ଜଣେ ଧନୀ ଯୁବକ ଅସୀତକୁ ବିବାହ କରିଗଲା । ଫଳରେ ଉମାକାନ୍ତ ହେଲା ବ୍ୟର୍ଥ ପ୍ରେମିକ, ଉଦ୍‌ଭ୍ରାନ୍ତ ।

ଆରତି ଅନ୍ୟତ୍ର ବିବାହ ପରେ ଉମାକାନ୍ତ ଜୀବନରେ ଆଉ ଜଣେ ନାରୀର ଆବିର୍ଭାବ ଘଟିଥିଲା । ସେ ନାରୀ ଶାନ୍ତିନିକେତିନୀ ବଙ୍ଗଲଳନା ଅଳକା । ସେ ଚାହିଁଥିଲା ଉମାକାନ୍ତକୁ ବିବାହ କରିବା ପାଇଁ । କିନ୍ତୁ ପରକୀୟ ଆରତି ପ୍ରତି ନିବିଡ଼ ଅନୁରକ୍ତି ଯୋଗୁଁ ଉମାକାନ୍ତ ଅଳକାକୁ ବିବାହ କରିବାକୁ ସମ୍ମତ ହୋଇ ନଥିଲା । ଆରତିକୁ ନ ପାଇ ଉମାକାନ୍ତ ଉଦ୍‌ଭ୍ରାନ୍ତ ହୋଇଥିଲା, ହେଲେ ଉମାକାନ୍ତର ପ୍ରତ୍ୟାଖ୍ୟାନ ପରେ ଅଳକା ଭାଙ୍ଗିପଡ଼ି ଆତ୍ମହତ୍ୟା କଲା । ଅଳକାର ଭାଇ ସରୋଜ ଅଭିଯୋଗକଲା ଯେ ଏହା ଆତ୍ମହତ୍ୟା ନୁହେଁ- ହତ୍ୟା । ଏଥିପାଇଁ ଦାୟୀ ଉମାକାନ୍ତ । ବିଚାରଳାୟର ଶାସ୍ତି ଗ୍ରହଣ କରି ଉମାକାନ୍ତ ଭୋଗକଲା ସଶ୍ରମ କାରାଦଣ୍ଡ ।

ସୁରେଶର ପ୍ରରୋଚନାରେ ଆରତିକୁ ବିବାହ କରିଥିଲେ ସୁଦ୍ଧା ଅସୀତ ବେଳାବାନାର୍ଜୀ ନାମ୍ନୀ ଏକ ତରୁଣୀ ସହିତ ଘନିଷ୍ଠ ହୋଇଥିଲେ । ସେମାନଙ୍କ ଦାମ୍ପତ୍ୟ ଜୀବନରେ ଏକ

ଫାଙ୍କ ସୃଷ୍ଟି ହୋଇଯାଇଥିଲା । ସେଇ ସୁଯୋଗରେ ସୁରେଶ ଆରତୀକୁ ନିଜ ଆଡ଼କୁ ଟାଣିବାକୁ ଚେଷ୍ଟା କରିଥିଲା । ଅସୀତର ଆକସ୍ମିକ ମୃତ୍ୟୁ ପରେ ଅସହାୟ ବିଧବା ଆରତୀକୁ ବିଭ୍ରାନ୍ତ କରି ସେ ରେଙ୍ଗୁନ ନେଇ ଚାଲିଗଲା ।

ଭଗ୍ନ ହୃଦୟ, ଶୀର୍ଣ୍ଣ ସ୍ୱାସ୍ଥ୍ୟ ଉମାକାନ୍ତ ଜେଲ୍‌ରୁ ଖଲାସ ହୋଇ ନିଜ ଗୃହକୁ ଫେରିବା ପାଇଁ ଆତ୍ମ ପ୍ରତ୍ୟୟ ପାଇ ନ ଥିଲା । ଜୀବିକା ଅର୍ଜନ ପାଇଁ କଟକ ଷ୍ଟେସନରେ କିଛି ଦିନ କୁଲିକାମ କରି ସଞ୍ଚିତ ଅର୍ଥ ଧରି ସେ ଚାଲିଯାଇଥିଲା କଲିକତା । ସେଠାରେ ବେଲୀ ବାନାର୍ଜୀଙ୍କ ସହିତ ତା'ର ଘନିଷ୍ଠତା ହୋଇଥିଲା କିନ୍ତୁ ସେ ଘନିଷ୍ଠତା ଅମ୍ପ୍ରୀୟତାରେ ପରିଣତ ହେବା ଆଗରୁ ସେ ଲୁଟ କରି ଚାଲିଗଲା ରେଙ୍ଗୁନ୍ ।

ସୁରେଶ ଆଶା କରିଥିଲା ଅସହାୟା ଆରତି ତା ପାର୍ଶ୍ୱରେ ବିଧବା ହେବାପରେ ଆତ୍ମ ସମର୍ପଣ କରିବ । କିନ୍ତୁ ଆରତିର ଉମାକାନ୍ତ ପ୍ରତି ଗଭୀର ପ୍ରଣୟ ଯୋଗୁ ତାର ସେ ଆଶା ବ୍ୟର୍ଥ ହେଲା । ତେଣୁ ସେ ଦିନେ ରେଙ୍ଗୁନ୍‌ରେ ଏକ ବାରଙ୍ଗନାର ସହକାରିଣୀ ଭାବରେ ଆରତିକୁ ବିକ୍ରୀ କରିଦେବାକୁ ବସିଥିବାବେଳେ ହଠାତ୍ ସେଠାରେ ଉମାକାନ୍ତ ପହଞ୍ଚି ସୁରେଶକୁ ହତ୍ୟା କଲା ଏବଂ ମୂର୍ଚ୍ଛିତା ଆରତିକୁ ସ୍କନ୍ଧରେ ବହନ କରି ଅନିଶ୍ଚିତ ପଥରେ ଚାଲିଗଲା ।

ଉପନ୍ୟାସର ପରିସମାପ୍ତି :

କେତେ ଦୂର ଆଉ ? ମୋ ହାତ ମୁଠାରେ ହାତରଖି ଶକ୍ତକରି ଧର ମତେ ଆରତି ।

ଆଗରେ ଇରାବତୀ ନଦୀ । ଚାଲ...... ଆଜି ତାର କୂଳରେ ଠିଆ ହୋଇ ଯୁଗଳ ଜୀବନରେ ପ୍ରଥମ ସୂର୍ଯ୍ୟୋଦୟ ଦେଖିବା ।

ଆରତି ହସେ..."

ଏଇ ହେଉଛି 'ଉଦଭ୍ରାନ୍ତ' ଉପନ୍ୟାସର କାହାଣୀ ।

॥ ତିନି ॥

'ଉଦ୍‌ଭ୍ରାନ୍ତ' ଲକ୍ଷ୍ମୀଧର ବାବୁଙ୍କ ପ୍ରଥମ ପ୍ରେମୋପନ୍ୟାସ । ଆଜିର ପାଠକମାନଙ୍କ ପାଖରେ ଏହା ଏକ ଗତାନୁଗତିକ ପ୍ରେମକାହାଣୀ ଭଳି ମନେ ହୋଇପାରେ, କିନ୍ତୁ ୧୯୩୪ ମସିହାରେ 'ଛଅମାଣ ଆଠଗୁଣ୍ଠ' - 'ମାଟିର ମଣିଷ' ଉପନ୍ୟାସ ଯୁଗରେ ଏହା ନିଶ୍ଚୟ ଥିଲା ଏକ ଦୁଃସାହସିକ ପ୍ରେମ-ଉପନ୍ୟାସ । ଉପନ୍ୟାସ ଶୈଳୀର ନୂତନତ୍ୱ, ଭାଷାର ନାଟକୀୟତା ଏହାକୁ ଏକ ଲୋକପ୍ରିୟ ଉପନ୍ୟାସରେ ପରିଣତ କରି ଥିଲା । ତତ୍‌କାଳୀନ ସାମାଜିକ-ନୈତିକତା ଉପରେ 'ଉଦ୍‌ଭ୍ରାନ୍ତ' ନିଃସନ୍ଦେହରେ ଏକ ପ୍ରଚଣ୍ଡ ଆଘାତ ଦେଇଥିଲା । ପ୍ରଣୟନିଷ୍ଠା

ପୁରୁଷକୁ ଉଦ୍‌ଭ୍ରାନ୍ତ କରେ, ନୃଶଂସ କରେ, କିନ୍ତୁ ଅମଣିଷ କରେ ନାହିଁ, ଏହା ହିଁ ଥିଲା ଏଇ ଉପନ୍ୟାସର ବାର୍ତ୍ତା।

୧୯୩୪ ମସିହାର ସାମାଜିକ ନୈତିକତା ୧୯୮୪ ମସିହାରେ ଓଲଟ ପାଲଟ ହୋଇଯାଇଛି। ଆଜି ହୁଏତ ପ୍ରେମରେ ବ୍ୟର୍ଥ ହୋଇ କେହି ଅଳକା ଭଳି ଆତ୍ମହତ୍ୟା କରନ୍ତି ନାହିଁ, କିମ୍ବା ଶରତଚନ୍ଦ୍ରଙ୍କ ଦେବଦାସ ଅଥବା ଲକ୍ଷ୍ମୀଧର ବାବୁଙ୍କ ଉମାକାନ୍ତ ଭଳି ଉଦ୍‌ଭ୍ରାନ୍ତ ହୁଅନ୍ତି ନାହିଁ। ତେଣୁ ଉଦ୍‌ଭ୍ରାନ୍ତ ଉପନ୍ୟାସର ବାସ୍ତବତା ଆଜିର ପାଠକମାନଙ୍କୁ ଅବାସ୍ତବ ମନେ ହୋଇପାରେ। କିନ୍ତୁ ୧୯୩୪ ମସିହାର ବାସ୍ତବତାର ପରିପ୍ରେକ୍ଷୀରେ 'ଉଦ୍‌ଭ୍ରାନ୍ତ'ର କାହାଣୀ ଯେ ସେ ସମୟର ଔପନ୍ୟାସିକମାନଙ୍କ ଆଦର୍ଶବାଦ ଉପରେ ଆଘାତ କରି ବାସ୍ତବବାଦର ଶଙ୍ଖଧ୍ୱନିଶୁଣାଇଥିଲା, ଏଥିରେ ସନ୍ଦେହ ନାହିଁ।

॥ ଚାରି ॥

'ଉଦ୍‌ଭ୍ରାନ୍ତ'ର ଆଲୋଚନା ପ୍ରସଙ୍ଗରେ ଡକ୍‌ଟର ମାୟାଧର ମାନସିଂହ ଏକଦା ମନ୍ତବ୍ୟ କରିଥିଲେ- "ମୋଟ ଉପରେ 'ଉଦ୍‌ ଭ୍ରାନ୍ତ' ଯେ ଆଧୁନିକ ଓଡ଼ିଆ ଉପନ୍ୟାସମାନଙ୍କ ଭିତରେ ଏକ ଯୁଗଧର୍ମୀ, ଜୀବନଧର୍ମୀ ଓ ଯଥାର୍ଥଭାବରେ ସମାଜଧର୍ମୀ ପୁସ୍ତକ, ଏଥିରେ ସନ୍ଦେହ ନାହିଁ। ଲେଖକ ନାୟକ କିନ୍ତୁ ଏ କୃତିତ୍ୱ ପାଇଁ ଏଯାବତ୍‌ ଏ ଦେଶରେ ସାମାନ୍ୟତମ ସମ୍ବର୍ଦ୍ଧନା ପାଇଛନ୍ତି ବୋଲି ସ୍ମରଣ ହେଉ ନାହିଁ। ତାହା ମଧ୍ୟ ଏ ଦେଶରେ ସ୍ୱାଭାବିକ। କାରଣ ସେ ନିଜ ବହିର ସମାଲୋଚନା ନିଜେ ଲେଖି ଦୈନିକ ପତ୍ରିକାମାନଙ୍କର, ରବିବାସରୀୟ ସମ୍ପାଦକ-ମାନଙ୍କର ହାତ ଧରି ଜାଣି ନାହାନ୍ତି"

'ଉଦ୍‌ ଭ୍ରାନ୍ତ' ପାଠକମାନଙ୍କ ଦ୍ୱାରା ସମ୍ବର୍ଦ୍ଧିତ ହୋଇଥିଲା। ତାର ଅନେକ ଗୁଡିଏ ସଂସ୍କରଣ ତାହା ପ୍ରମାଣିତ କରିଛି। କିନ୍ତୁ ବିଦ୍‌ଗ୍ଧ ସମାଲୋଚକମାନଙ୍କ ଦ୍ୱାରା ଯଦି ଏହା ପ୍ରଶଂସିତ କିମ୍ବା ପୁରସ୍କୃତ ହୋଇ ନଥିଲା ସେଥିପାଇଁ ସମାଲୋଚକମାନଙ୍କୁ ଦୋଷ ଦେଇ ଲାଭ ନାହିଁ। କାରଣ ଆମ ଦେଶରେ ଉପନ୍ୟାସର ମାନନିର୍ଦ୍ଧାରଣର ମାପକାଠି ହେଉଛି ଏହାର ପାଠ୍ୟପୁସ୍ତକ ହେବାର ଉପଯୋଗୀତା।

ପାଠ୍ୟପୁସ୍ତକ ହେବାର ଲକ୍ଷ୍ୟରେ ହିଁ ପ୍ରଥମରୁ ଓଡ଼ିଆ ଉପନ୍ୟାସ ଲେଖା ହେଉଥିଲା। ଏ ସଂପର୍କରେ 'ବିବାସିନୀ'ର ଔପନ୍ୟାସିକ ରାମଶଙ୍କର ରାୟଙ୍କ ଏକ ଉକ୍ତି ସ୍ମରଣୀୟ। ମୁଁ 'ଉତ୍‌ କଳମଧୁପ' ନାମକ ମାସିକପତ୍ର ବାହାର କଲାବେଳେ 'ସୌଦାମିନୀ' ନାମକ ଉପନ୍ୟାସ ଲେଖୁଥିଲି। ସେ ଉପନ୍ୟାସ ଶେଷହେବା ପୂର୍ବେ ଦେଶର ସ୍ୱାଭାବିକ ଗତିରେ

ଗ୍ରାହକମାନେ ମୂଲ୍ୟ ନଦେବାରୁ କାଗଜ ଖଣ୍ଡିକ ବନ୍ଦ ହୋଇଗଲା । ମୁଁ କ୍ଷୁବ୍‌ଧ ହୋଇ ରହିଲି । ସେହି ଉପନ୍ୟାସର ହସ୍ତଲିପି ମୁଁ ତତ୍‌କାଳୀନ ଶିକ୍ଷା ବିଭାଗର ଡିପୋଟି ଇନ୍‌ସପେକ୍‌ଟର ଉମାଚରଣବାବୁଙ୍କୁ ଦେଖାଇଥିଲି । ସେ ତାହା ପଢ଼ି ବିସ୍ତର ପ୍ରଶଂସା କଲେ । ମାତ୍ର ଉପନ୍ୟାସ ବିଦ୍ୟାଳୟ ପାଠ୍ୟପୁସ୍ତକର ଅନୁପଯୁକ୍ତ ବୋଲି ମତ ଦେବାରୁ ମୁଁ କ୍ଷାନ୍ତ ହୋଇ ରହିଲି ।'

ରାମଶଙ୍କରଙ୍କ ପରବର୍ତ୍ତୀକାଳ, ଏପରିକି ଆଜି ମଧ୍ୟ ପାଠ୍ୟପୁସ୍ତକ ପାଇଁ ନିର୍ବାଚିତ ଉପନ୍ୟାସ ଉଚ୍ଚକୋଟିର ସାହିତ୍ୟ ବୋଲି ଏକ ଅଦ୍ଭୁତ ଭ୍ରାନ୍ତ ଧାରଣା ଆମ ଦେଶର ପାଠକ, ସମାଲୋଚକମାନଙ୍କ ମନକୁ ଆଚ୍ଛନ୍ନ କରି ରଖିଛି । ଛାତ୍ର-ପାଠ୍ୟ ଉପନ୍ୟାସରେ ଅନେକ ସୀମାବଦ୍ଧତା ରହିଛି, ଏଥି ପାଇଁ ବାସ୍ତବବାଦୀ ଉପନ୍ୟାସ ଅପେକ୍ଷା ଆଦର୍ଶବାଦୀ ଉପନ୍ୟାସର ପ୍ରୟୋଜନୀୟତା ଅଧିକ, ଅଥଚ ଆଦର୍ଶବାଦ ଉପନ୍ୟାସରୁ ଅନେକ ଦିନୁ ବାତି ଲହୋଇ ଗଲାଣି, ଏକଥା ଆମର ଅନେକ ସାହିତ୍ୟ-ସମାଲୋଚକଙ୍କର ବୋଧଗମ୍ୟ ହୋଇନାହିଁ, ତେଣୁ 'ଉଦ୍‌=ଭ୍ରାନ୍ତ' ପାଇଁ କେବଳ ନୁହେଁ, "ସେ ମରିନାହିଁ" ଏବଂ ରାଉରକେଲାର ପୃଷ୍ଠଭୂମିରେ ରଚିତ "ମୋ ସପ୍ନର ସହର" ଉପନ୍ୟାସ ପାଇଁ ଯେ ଲକ୍ଷ୍ମୀଧର ବାବୁ ଆମର ତଥାକଥିତ ଟୀକାକାର ଓ ସମାଲୋଚକମାନଙ୍କ ଦ୍ୱାରା ସମ୍ମାନିତ ହୋଇ ନାହାନ୍ତି; ଏଥିରେ ବିସ୍ମିତ ହେବାର କିଛି ନାହିଁ ।

*****

# ଓଡ଼ିଆ କଥା ସାହିତ୍ୟକୁ ଲକ୍ଷ୍ମୀଧର ନାୟକଙ୍କ ଅବଦାନ-ଏକ ଭୂମିକା

ଡଃ ପ୍ରଫୁଲ୍ଲ କୁମାର ମହାନ୍ତି

ଓଡ଼ିଆ ସାହିତ୍ୟର କ୍ରମବିକାଶରେ ଲକ୍ଷ୍ମୀଧର ନାୟକଙ୍କ ଅବଦାନ ଅନସ୍ୱୀ କାର୍ଯ୍ୟ। କିନ୍ତୁ ଅବଦାନର ମୂଲ୍ୟାୟନ ଅପେକ୍ଷା, ଅବଦାନର ପଛଭୂମି ଏବଂ ପ୍ରକୃତି ନିର୍ଣ୍ଣୟ କରିବା ଯେହେତୁ ବେଶି ଫଳପ୍ରଦ, ଏହି କ୍ଷୁଦ୍ର ପ୍ରବନ୍ଧ ତାହାରି ଭିତରେ ସୀମିତ ରହିବ।

ଓଡ଼ିଆ ଉପନ୍ୟାସ ଯେତେବେଳେ ବହୁ ପଠିତ ହୋଇ ନଥିଲା, ଏବଂ ଉପନ୍ୟାସ ପାଠକମାନେ ଯେତେବେଳେ ପ୍ରସ୍ତୁତ ହେଉଥିଲେ ନୂଆ ନୂଆ ଖୋଲିଥିବା ସ୍କୁଲ, କଲେଜରେ, ସେତିକିବେଳେ ଶ୍ରୀଯୁକ୍ତ ନାୟକ ନୂଆକରି ବାଢ଼ିଦେଲେ ଏକ ନିର୍ମାଣମୁଖୀ ଓଡ଼ିଶାର ଚିତ୍ର, ତାଙ୍କ ଉପନ୍ୟାସ ମାଧ୍ୟମରେ। ତାଙ୍କ ସମସ୍ତ ଉପନ୍ୟାସର ଭିତ୍ତିଭୂମି, ସ୍ୱାଧୀନୋତ୍ତର ଓଡ଼ିଶା ଏବଂ ଓଡ଼ିଶାର ବହୁମୁଖୀ ବିକାଶର ଆରମ୍ଭ ସମୟର ସମସ୍ୟା, ଦ୍ୱନ୍ଦ ଏବଂ ସମାଧାନର ସଂକେତ। ଏହି ଉପନ୍ୟାସ ଗୁଡ଼ିକ ଏକ ରୁଦ୍ଧ ଆବେଗର ପରିଭାଷା ମଧ୍ୟ। କାରଣ ସ୍ୱାଧୀନତା ପ୍ରାପ୍ତିପରେ ରାସ୍ତା ଘାଟର ସଂଯୋଗ, ଶିକ୍ଷାର ପ୍ରସାର ଏବଂ ବିଶେଷ କରି ନିମ୍ନ ମଧ୍ୟବିତ୍ତ ଓ ମଧ୍ୟବିତ୍ତ ଶ୍ରେଣୀର ସୃଷ୍ଟି ଯେଉଁ ଅଧୈର୍ଯ୍ୟ ପରିସ୍ଥିତି ସୃଷ୍ଟି କରିଥିଲା, ତାହାର ପ୍ରତିଫଳନ ହିଁ ଆମେ ଦେଖୁ ଶ୍ରୀ ନାୟକଙ୍କ ଉପନ୍ୟାସରେ। ଅର୍ଥାତ୍ ଶିକ୍ଷା ମାଧ୍ୟମରେ ଓଡ଼ିଶା ସହିତ ଅନ୍ୟ ରାଜ୍ୟ ଓ ଦେଶମାନଙ୍କର ଯେଉଁ ତୁଳନାତ୍ମକ ଚିତ୍ର ବୁଦ୍ଧିଜୀବୀ ଏବଂ ଶିକ୍ଷିତ ସଚେତନ ବ୍ୟକ୍ତିମାନସରେ ଉଦ୍‌ଭାଷିତ ହୋଇଥିଲା, ସେହି ଚିତ୍ର ଆଲୋକିତ କରିଥିଲା କଥାକାରର ମନକୁ ଏବଂ ଏକ ବ୍ୟଗ୍ର ଆତୁରତା ଓ ଅଧୈର୍ଯ୍ୟ ଭାବ ମଧ୍ୟ ଆକ୍ରମଣ କରିଥିଲା ଶ୍ରୀ ନାୟକଙ୍କର ନିର୍ମାଣ ସ୍ୱପ୍ନକୁ। ଓଡ଼ିଶା କିପରି ଏକ ସମୃଦ୍ଧ ରାଜ୍ୟରେ ପରିଗଣିତ ହେବ ଏବଂ କେତେ ଚଞ୍ଚଳ ଏହା ହୋଇ ପାରିବ, ଏହି ଆତୁରତା ତାଙ୍କର ଘଟଣା ଓ ଚରିତ୍ର ବିନ୍ୟାସର ମୂଳମନ୍ତ୍ର। ପାରଂପରିକ ନୈତିକତା ଏବଂ ବ୍ୟକ୍ତିବାଦ ଓ ପୂର୍ଣ୍ଣତାର ଆତ୍ମ-ସଂଗଠନ ମଧ୍ୟରେ ଯେଉଁ ସଂଘାତ ସ୍ୱାଭାବିକ ଭାବରେ ଓଡ଼ିଶାର ଜନଜୀବନ ଭିତରେ ପ୍ରବେଶ କରିଥିଲା, ତା'ର ଅନୁଭୂତି ମଧ୍ୟ ଶ୍ରୀ ନାୟକଙ୍କ ଉପନ୍ୟାସରେ ଏବଂ ଗଳ୍ପ-କବିତା-ନାଟକରେ ପରିଲକ୍ଷିତ ହୁଏ। ଅନ୍ୟ ଭାଷାରେ, ଲକ୍ଷ୍ମୀଧର ନାୟକଙ୍କ ଉପନ୍ୟାସରେ, ଆଧୁନିକତାର ଗଣ୍ଡି ଭିତରକୁ କ୍ରମପ୍ରବେଶ କରୁଥିବା ଏକ ଜାତିର ନୈତିକ ଦ୍ୱନ୍ଦ ଏବଂ ସାମାଜିକ ଜାଗରଣ ଜନିତ

ଜନ୍ମଯନ୍ତ୍ରଣାର ବାସ୍ତବ ଏକ ଅଭିମାନୀ ଓ କାବ୍ୟିକ ପରିବେଶରେ ଦେଖାଯାଏ । ଏହି ପରିବେଶ ମୁଖ୍ୟତଃ ତିନୋଟି ସ୍ରୋତରେ ପ୍ରକାଶ ପାଇଛି; ଜାତୀୟତା,ପ୍ରେମ ଏବଂ ପ୍ରତିବାଦ । ଏହି ତିନୋଟି ସ୍ରୋତ ପ୍ରାୟ ଏକମୁଖୀ ଏବଂ ପରସ୍ପରର ପରିପୂରକ ହୋଇ ବହନ୍ତି । ଦେଶ ଓ ଜାତିକୁ ଅନ୍ୟମାନଙ୍କର ସମକକ୍ଷ କରିବା ପାଇଁ ଯେଉଁ ବ୍ୟାକୁଳତା ଆମେ "ସର୍ବହରା", ହା'ରେ ଦୁର୍ଭାଗା ଦେଶ" ଏବଂ "ମୋ ସପ୍ନର ସହର"ରେ ଦେଖୁ ସେହି ବ୍ୟାକୁଳତା ପ୍ରେମରୁ ସଂଭୁତ୍ । ତେଣୁ ପ୍ରେମ ଶ୍ରୀ ନାୟକଙ୍କ କଥା କାହାଣୀରେ ଏକ ବଳିଷ୍ଠ ବିଭବ ।ଦେହ ଏବଂ ନାରୀର ଆକର୍ଷଣ କିମ୍ବା ରୋମାଞ୍ଚଧର୍ମୀ ପ୍ରେମ କାହାଣୀ ଉପନ୍ୟାସ ଗୁଡିକରେ ମୌଳିକ ପ୍ରେରଣା ନୁହେଁ । ନାରୀ ପ୍ରତି ଆକର୍ଷଣ, ପ୍ରେମତପସ୍ୟା ଏବଂ ପ୍ରେମବିକାର ଯଦିଓ ଆମେ ଦେଖୁଁ ସେଇ ପ୍ରେମ କେବଳ ବିକାର ନୁହେଁ । 'ଭୁଲିଲ ସତେ ସଖୀ"ର ନାୟକ ଠାରୁ "ରକ୍ତଝରା ଭୋର" ପର୍ଯ୍ୟନ୍ତ ସମସ୍ତ ନାୟକ ପ୍ରେମ କରନ୍ତି ଏବଂ ପ୍ରେମକୁ ନେଇ ନାନା ସଂଘର୍ଷ କରନ୍ତି । କିନ୍ତୁ ପ୍ରେମ ବ୍ୟାପକ । ଦେଶ ଗଢ଼ିବାର ସପ୍ନ ଏବଂ ଜୀବନବୋଧ ପ୍ରତି ପ୍ରେମ ସେମାନଙ୍କର ବିଶେଷତ୍ୱ । ଅବଶ୍ୟ "ଉଦ୍‌ଭ୍ରାନ୍ତ" ଏବଂ "ତରୁଣ କବିର ଆଶା" ପ୍ରଭୃତିରେ ରୋମାଞ୍ଚଧର୍ମୀ ପ୍ରେମ ଏକ ବଳିଷ୍ଠ ଆକର୍ଷଣ; ତଥାପି ପ୍ରେମ ପାରିବାରିକ ସାମାଜିକତା ଭିତରେ ବା ବ୍ୟକ୍ତିର ଏକାନ୍ତ ସପ୍ନ ଭିତରେ ଆବଦ୍ଧ ନୁହେଁ । ଏବଂ ଲକ୍ଷ କରିବାର କଥା ଯେ ପ୍ରେମର ପୂର୍ଣ୍ଣତା ବା ସଫଳତା କୌଣସି ନାୟକ ନାୟିକା ପାଇ ନାହାଁନ୍ତି । ଅର୍ଥାତ୍ ବିବାହ ମାଙ୍ଗଳିକରେ ଶ୍ରୀ ନାୟକଙ୍କ ଉପନ୍ୟାସ ସରିଯାଏ ନାହିଁ । ପ୍ରେମ ଏଠି ପ୍ରାଣ ପ୍ରାଚୁର୍ଯ୍ୟର ସ୍ପନ୍ଦନ । ପ୍ରେମ ଏଠି ସମଗ୍ର ଜୀବନକୁ ଭଲ ପାଇବାର ପ୍ରତୀକ । ଏବଂ ତା'ର ବିଫଳତା ଏବଂ ନୈତିକ ଅବନୀୟ ରୂପାୟିତ ହୋଇଛି ପ୍ରତିବାଦରେ । କବିତାରେ ମଧ ଲକ୍ଷ୍ମୀଧର ଏହି ତ୍ରିମୁଖୀ ସ୍ରୋତର ମୌଳିକତା ରକ୍ଷା କରିଛନ୍ତି । ଅପ୍ରାପ୍ତ ବୟସର ପ୍ରେମିକା ଯେତେବେଳେ ବିଫଳତାର ବୀରହିଣୀ ରୂପରେ ଦେଖା ଦେଇଛି ନାୟକର "ଫାଳେ ମୁହଁ କଳା ପଡ଼ିଥିବା ବେଳେ," ସେତେବେଳେ ନାୟକ ରକ୍ଷା କବଚର ଆଶ୍ରିତ ସପ୍ନରେ ସଂସାର ଚିତ୍ର ଆଣୁନାହିଁ ମନରେ । ପ୍ରେମିକାକୁ ସେ ପଟୁଆର ଶୋଭାଯାତ୍ରାରେ ଧ୍ୱନୀ ଦେବା ପାଇଁ ନିମନ୍ତ୍ରଣ କରିଛି । କର୍ମମୁଖର ବାସ୍ତବତାକୁ ନିମନ୍ତ୍ରଣ ଜଣାଇଛି ଦେହ ଓ ପିପାସାକୁ ଅତିକ୍ରମ କରି । ଜୀବନବୋଧର ସ୍ତବ୍ଧ ତୋରଣ ଗଢ଼ିବା ପାଇଁ ଆହ୍ୱାନ କରିଛି ।

ଶ୍ରୀ ନାୟକଙ୍କ ଉପନ୍ୟାସରେ ସ୍ୱାଧୀନତାପ୍ରାପ୍ତିର ପ୍ରଥମ ତିରିଶି ବର୍ଷର ଓଡ଼ିଶାର ଚିତ୍ର ଅତି ସ୍ପଷ୍ଟ । ଶ୍ରମଜୀବୀର ସଂଘର୍ଷ, ବୁଦ୍ଧିଜୀବୀର ହତାଶା, ଆଦର୍ଶବାଦର ପରାଜୟ ଏବଂ

ନୈତିକତାର ଅଧଃପତନ ନୂଆ ସଭ୍ୟତାର ଆଙ୍ଗିକ ଭିତରେ ଯେଉଁ ନୈରାଶ୍ୟର ମନସ୍ଥିତି ସୃଷ୍ଟି କରିଛି, ସେଇ ମନସ୍ଥିତି ହିଁ ପାଠକକୁ ଅଭିଭୂତ କରେ। ଏହି ସବୁ ଉପନ୍ୟାସର ନାୟକ, ସେ ଉଦୟନ୍ ହେଉ କିମ୍ବା ସୁବ୍ରତ ହେଉ, ଅବହିତ ନୈତିକ ପତିବ୍ରତା ଏବଂ ଅନୁସୃତ ଆତ୍ମସାଧନାର ବର୍ବରତାର ସଂଘାତରେ ଜର୍ଜରିତ। ସଂପୂର୍ଣ୍ଣ ବିଫଳ ହୋଇ ସେ ନିଜର ଆଦର୍ଶର ଗୁମ୍ଫାରେ ଆତ୍ମଗୋପନ କରେ, କିମ୍ବା ପଳାୟନରେ ନିଜ ଛାଇ ଠାରୁ ଅନେକ ଦୂରକୁ ଯେଉଁଠି ସ୍ୱପ୍ନ ଲଟକା ହୁଏ। ଅନ୍ଧାରି କୋଣରେ ଦୁର୍ନୀତି ଏବଂ ପ୍ରେମହୀନତାର ପରିବେଶରେ ଅଣନିଶ୍ୱାସୀ ହୋଇ ସେ ପଳାୟନ କରେ ହୁଏତ ଶବକୁ କାନ୍ଧରେ ପକାଇ କିମ୍ବା ସବୁ ସ୍ୱପ୍ନ ଆଦର୍ଶର ଭଙ୍ଗା କାନ୍ଥରେ ନିଆଁରେ ଦରପୋଡ଼ା ହୋଇ। ଓଡ଼ିଶାର ଗଢ଼ିଉଠୁଥିବା କୋଠାବାଡ଼ି ଏବଂ ଶିଳ୍ପ ସଭ୍ୟତାର ନୂତନ ମନ୍ଦିର ଭିତରେ କୌଣସି ବିଗ୍ରହ କିମ୍ବା ପ୍ରଶାନ୍ତି ନ ଦେଖି ସେ ଫେରିଯାଏ ନିଜର ଚରମ ଶୂନ୍ୟତାକୁ। ଭ୍ରଷ୍ଟାଚାରର ଦୁନିଆଦ ଭାଙ୍ଗିଲେ ମଧ ସେ ଆଶା କରିପାରେ ନାହିଁ ନରମ ସକାଳର ଶାନ୍ତ ଅରୁଣିମାକୁ।

ଓଡ଼ିଶାର ବାସ୍ତବ ଏବଂ ମାର୍କସ୍ ଗାନ୍ଧୀଙ୍କର ଚିନ୍ତାଧାରା ଭିତରେ କୌଣସି ସଂପର୍କର ସମ୍ଭାବନା ନ ଦେଖି ସେ ନକ୍ସାଲ ପନ୍ଥୀ ମଧ ହୁଏ ଶେଷରେ। କିନ୍ତୁ ସେଠି ମଧ ଦେଖିପାରେ ନାହିଁ ଉତ୍ତରଣର ଆନନ୍ଦ। କାରଣ ଭାଂଗିବାଠାରୁ ଗଢ଼ିବାର ନିଶା ଶ୍ରୀ ନାୟକଙ୍କ ବେଶୀ। ତେଣୁ ଶ୍ରୀ ନାୟକ ତାଙ୍କ ଉପନ୍ୟାସରେ ଛାଡ଼ିଯା'ନ୍ତି ଏକ ଗଭୀର ମନନଶୀଳ କାବ୍ୟିକ ପ୍ରାଣର ଜୀବନବୋଧ ଏବଂ ତଜ୍ଜନିତ ବେଦନା। ଗୋଟିଏ ସଚେତନ ବିକାଶ ପ୍ରଚେଷ୍ଟାର, ପ୍ରାଥମିକ ପର୍ଯ୍ୟାୟର ଯନ୍ତ୍ରଣା। ଗୋଟିଏ ଦରଦୀପ୍ରାଣୀର ବିଫଳ ଅଶ୍ରୁ।

ସେହି ସମ୍ବେଦନଶୀଳ ପ୍ରାଣର ସ୍ୱପ୍ନ ଏବଂ ସ୍ୱପ୍ନଭଙ୍ଗର ଶବ୍ଦରେ ଯଦି ଏ ଜାତି କେବେ ଚମକେ, ସେଇ ହେବ ଶ୍ରୀ ନାୟକଙ୍କ ସାହିତ୍ୟିକ ଅବଦାନ ପ୍ରତି ନରମ ଶ୍ରଦ୍ଧାଞ୍ଜଳି।

* * * * *

# ଓଡ଼ିଆ ରଙ୍ଗମଞ୍ଚ ଓ ଲକ୍ଷ୍ମୀଧର

ଡଃ ହେମନ୍ତ କୁମାର ଦାସ

ନାଟ୍ୟକାର ଲକ୍ଷ୍ମୀଧର ନାୟକ ପଞ୍ଚମ ଦଶକର ଜଣେ ପ୍ରତିଶ୍ରୁତିସମ୍ପନ୍ନ ନାଟ୍ୟକାର ହୋଇଥିଲେ ହେଁ, ତାଙ୍କ ସମ୍ପର୍କରେ କୌଣସି ଆଲୋଚନା ହୋଇଥିବାର ଦୃଷ୍ଟିଗୋଚର ହୋଇନାହିଁ। ଅଥଚ ଓଡ଼ିଆ ନାଟକରେ ଦୀର୍ଘକାଳଧରି ଚାଲିଥିବା ପୌରାଣିକ ଏବଂ ଐତିହାସିକ ନାଟକର ପ୍ରାଧାନ୍ୟ ହ୍ରାସ କରାଇବା ନିମନ୍ତେ କାଳୀବାବୁ ଯେତେବେଳେ 'ଓଡ଼ିଶା ଥିଏଟର୍ସ'ରେ 'ଗାର୍ଲସ୍କୁଲ' (୧୯୪୨) ନାଟକର ଅଭିନୟ କରାଇଥିଲେ, ଲକ୍ଷ୍ମୀଧରଙ୍କର ପ୍ରଥମ ସାମାଜିକ ନାଟକ 'ଧର୍ମପତ୍ନୀ' ଠିକ୍ ସେହି ସମୟରେ ହିଁ ଅନ୍ନପୂର୍ଣ୍ଣା ଥିଏଟର୍ସ ଦ୍ୱାରା ଅଭିନୀତ ହୋଇଥିଲା। ଏହାକୁ ଓଡ଼ିଶାର ସର୍ବପ୍ରଥମ ସାମାଜିକ ନାଟକରୂପରେ ପରିଚିତ କରାଇ ନାଟ୍ୟକାର ଲେଖିଛନ୍ତି, 'ଏଇ ଲେଖକର 'ଧର୍ମପତ୍ନୀ' ସାମାଜିକ ନାଟକଟି ସର୍ବପ୍ରଥମ ଓଡ଼ିଆ ସାମାଜିକ ନାଟକ ଭାବରେ ଅଭିନୀତ ହେଲା। ତତ୍କାଳୀନ ଅର୍ଥମନ୍ତ୍ରୀ ପଣ୍ଡିତ ଗୋଦାବରୀଶ ମିଶ୍ର ତାକୁ ଉଦ୍‌ଘାଟନ କଲେ।" (ଓଡ଼ିଆ ଲୋକନାଟ୍ୟ : ପୃ:୧୬୮ । ଏହି ମନ୍ତବ୍ୟଟି ଅବଶ୍ୟ ସତ୍ୟନୁହେଁ। କାରଣ ୧୯୪୨ମସିହା ବେଳକୁ ଅଶ୍ୱିନୀକୁମାରଙ୍କର 'ହିନ୍ଦୁରମଣୀ' (୧୯୩୭), ମାଷ୍ଟର ବାବୁ ୧୯୩୭), ଭାଇ (୧୯୪୨) ତଥା କାଳୀଚରଣଙ୍କର 'ପ୍ରତିଶୋଧ' (୧୯୩୪) ଏବଂ ଆହୂତି (୧୯୩୫) ପ୍ରଭୃତି ସାମାଜିକ ନାଟକମାନ ଲିଖିତ ଏବଂ ଅଭିନୀତ ହୋଇସାରିଥିଲା। ଏହା ବ୍ୟତୀତ ବଙ୍ଗଳା ସାମାଜିକ ନାଟକ ଏବଂ ପ୍ରହସନର ଅନୁବାଦ ଏଠାରେ ମଞ୍ଚସ୍ଥ ହେଉଥିଲା ସେଇ ଉନବିଂଶ ଶତକର ଶେଷପାଦରୁ। ଓଡ଼ିଶାରେ ସାମାଜିକ ନାଟକ ପାଇଁ ପରମ୍ପରା ସୃଷ୍ଟି କରିବାରେ ଏ ସମସ୍ତ ନାଟକର ନିର୍ଦ୍ଦିଷ୍ଟ ଭୂମିକା ରହିଛି। ତେଣୁ 'ଧର୍ମପତ୍ନୀ' ନାଟକକୁ ଏ ଦୃଷ୍ଟିରୁ କୌଣସି ମତେ ପ୍ରାଥମିକତାର ମର୍ଯ୍ୟାଦା ଦିଆଯାଇ ପାରିବ ନାହିଁ। ନାଟକଟିର ଗୁରୁତ୍ୱ କିନ୍ତୁ ଅନ୍ୟ ଦୃଷ୍ଟିରୁ ରହିଛି। 'ଗାର୍ଲସ୍କୁଲ' ଏବଂ 'ଧର୍ମପତ୍ନୀ' ଏ ଉଭୟ ନାଟକର ତୁଳନାତ୍ମକ ଆଲୋଚନାରୁ ଏହା ସ୍ପଷ୍ଟ ହୋଇଯିବ। ଆଧୁନିକ ଓଡ଼ିଆ ସାମାଜିକ ନାଟକ କ୍ଷେତ୍ରରେ ପରମ୍ପରା ପ୍ରତିଷ୍ଠାରେ 'ଗାର୍ଲସ୍କୁଲ' ନାଟକର ଭୂମିକା ସମ୍ପର୍କରେ ସମାଲୋଚକମାନେ ଉଚ୍ଛ୍ୱସିତ ମନ୍ତବ୍ୟମାନ ଦେଇଛନ୍ତି ଏବଂ ଲୋକପ୍ରିୟତାର କଷଟୀରେ ସଗୌରବେ ଉତ୍ତୀର୍ଣ୍ଣ ହୋଇଥିବାରୁ ତଥା ନାଟକାଭିନୟ କ୍ଷେତ୍ରରେ ଅଦ୍ୟାବଧି ପ୍ରତିଷ୍ଠିତ ସମସ୍ତ ରେକର୍ଡକୁ ଭାଙ୍ଗି ଦେଇଥିବାରୁ ଏ

ମନ୍ତବ୍ୟ ଯଥାର୍ଥ ମଧ୍ୟ । ତେବେ ଟିକିଏ ତଳେଇ କରି ବିଚାର କଲେ ଦେଖାଯିବ ଯେ, କେବଳ ମାତ୍ର ଲୋକପ୍ରିୟତା ଦୃଷ୍ଟିରୁ ନାଟକର ସଫଳତା କିମ୍ବା ଅସଫଳତା ସମ୍ପର୍କରେ ଏକ ଦୃଢ଼ ମତ ପୋଷଣ କରି ବସିବା ବୋଧ ହୁଏ ଯୁକ୍ତିଯୁକ୍ତ ନୁହେଁ । 'ଗାର୍ଲସ୍କୁଲ'ର ଲୋକପ୍ରିୟତା ପଛରେ ଅନେକ ଗୁଡ଼ିଏ କାରଣ ରହିଥିଲା । ପରିବେଷଣର ସଚ୍ଛନ୍ଦତା ହେଉଛି ଏଥିମଧ୍ୟରେ ପ୍ରଧାନ । ଇତିପୂର୍ବର ଓଡ଼ିଆ ନାଟକରେ ଯେଉଁ (ଗେରଷକ୍‌-ଉଦ୍ଧବଙ୍କବନ୍ଧସମ୍ପନ୍ନ) ଅତିନାଟକୀୟ ରହିଥିଲା, କାଳୀଚରଣ ଏଥିରେ ତାହାକୁ ବିଦାୟ ଦେଇ ପରିବେଷଣକୁ ଅତ୍ୟନ୍ତ ଘରୁଆ ତଥା ଜୀବନଧର୍ମୀ କରିଦେଲେ । ଦ୍ୱିତୀୟ କଥା ହେଉଛି, ଏହାର ସଂଳାପ ଚରିତ୍ର ଏବଂ ପରିବେଶ ସହିତ ଏଭଳି ଖାପଖାଇଗଲା ଯେ ଦର୍ଶକମାନେ ଏହାକୁ ଅଭିନୟ ବୋଲି ଧାରଣା କରିପାରିଲେ ନାହିଁ । ତୃତୀୟକଥା ହେଉଛି, ଏହାର ସୁଶ୍ରାବୀସଙ୍ଗୀତ ସେକାଳର ଦର୍ଶକମାନଙ୍କ ମନକୁ ମୁଗ୍ଧ କରିପାରିଥିଲା । ଚତୁର୍ଥତଃ, ଏହାର ଲଘୁପ୍ରଣୟଘଟିତ ପ୍ରେମକାହାଣୀଟି ସେକାଳର ତରୁଣଦର୍ଶକମାନଙ୍କୁ (ଯେଉଁମାନେ ମୋଟ ଦର୍ଶକ ସଂଖ୍ୟାର ନବେ ଭାଗ ଥିଲେ) ଅତ୍ୟନ୍ତ ଭଲ ଲାଗିଥିଲା । ତେଣୁ ଏଥିରେ ସେଭଳି କୌଣସି ଉଚ୍ଚ ଦର୍ଶନ କିମ୍ବା ଆଦର୍ଶର କଥା କୁହାଯାଇ ନଥିଲେ ମଧ୍ୟ ଏହା ଦର୍ଶକମାନଙ୍କ ଦ୍ୱାରା ସାଦରେ ଗୃହୀତ ହୋଇଥିଲା । ବିଷୟବସ୍ତୁ ଦୃଷ୍ଟିରୁ ଏହି ନାଟକକୁ "ପ୍ରଗତିର ବାହକ" ବୋଲି ନିର୍ଦ୍ୱନ୍ଦରେ କୁହାଯାଇପାରିବ କିମ୍ବା ନାହିଁ, ସେ ବିଷୟରେ ଆହୁରି ଚିନ୍ତା କରିବାକୁ ପଡ଼ିବ । ଏ ପରିପ୍ରେକ୍ଷୀରେ 'ଧର୍ମପତ୍ନୀ' ନାଟକକୁ ଆଲୋଚନା କଲେ ବରଂ ଚିନ୍ତା ଦୃଷ୍ଟିରୁ ଏହାକୁ ଅଧିକ ଆଧୁନିକ କୁହାଯାଇ ପାରିବ । ଏହାର ବିଷୟବସ୍ତୁରେ ସ୍ୱାମୀ ସ୍ତ୍ରୀର ଜଟିଳ ସମ୍ପର୍କ ଏବଂ ତାହାର କୁପରିମାଣମ ହିଁ ଦେଖାଇ ଦିଆଯାଇଛି । ଇତିପୂର୍ବରୁ ରାମଶଙ୍କର, ଭିକାରୀଚରଣ ପ୍ରମୁଖ ନାଟ୍ୟକାରମାନେ ଏହି ବିଷୟକୁ ନେଇ ନାଟକମାନ ରଚନା କରିଥିଲେ । ମାତ୍ର ସେହିସବୁ ନାଟକଗୁଡ଼ିକ ଆବେଗଧର୍ମିତାରୁ ମୁକ୍ତ ହୋଇ ନଥିବାରୁ କେବଳ ମାତ୍ର ନାଟ୍ୟକାରଙ୍କର କଳ୍ପନାବିଳାସର କ୍ଷେତ୍ର ଥିଲା । ଉଚ୍ଛୃଙ୍ଖଳଚରିତ୍ରହୀନ ସ୍ୱାମୀ ଏବଂ ପତିପରାୟଣା ଆଦର୍ଶବାଦିନୀ ସ୍ତ୍ରୀ ଏ ଉଭୟଙ୍କୁ ନେଇ ପ୍ରଗତି ତଥା ପରମ୍ପରାର ଏକ ଚମତ୍କାର ଦ୍ୱନ୍ଦ୍ୱ ଶ୍ରୀନାୟକଙ୍କ ନାଟକରେ ଦେଖାଇ ଦିଆଯାଇଛି । ସାମାଜିକ କୁରୀତିର ସଂପ୍ରଦର୍ଶନ ଏବଂ ତାହା ବିରୁଦ୍ଧରେ ସ୍ୱରଉତ୍ତୋଳନରେ, ନାଟ୍ୟକାର ନାୟକ ଏକ ପ୍ରଭାବଶାଳୀ ଭୂମିକା ଗ୍ରହଣ କରିଅଛନ୍ତି । ରାମଶଙ୍କର ଏବଂ ଭିକାରିଚରଣ ଦେଇଥିଲେ ଉପଦେଶ । ମାତ୍ର ଶ୍ରୀନାୟକ କରିଛନ୍ତି ବିଦ୍ରୋହ । ନାଟକରେ ବିଷୟବସ୍ତୁର ଭୂମିକା ସମ୍ପର୍କରେ ସୂଚନାଦେଇ ସେ

ଲେଖିଛନ୍ତି, "ଦୈନନ୍ଦିନଜୀବନରେ ଯାହା ଘଟିଯାଉଛି, ସମାଜର ବିଭିନ୍ନ ସ୍ତରରେ ଧନୀ ଦରିଦ୍ର ସମ୍ପ୍ରଦାୟ ଭିତରେ ରାଜନୀତି, ଅର୍ଥନୀତି, ଦୁର୍ନୀତି ବା ପ୍ରେମଜନିତ ମିଳନ, ବିରହ, ବିଚ୍ଛେଦ ପୁଣି ଦାରିଦ୍ର୍ୟର କଷାଘାତ ଭିତରେ ବା ପୁଂଜିପତିର ଚକ୍ରାନ୍ତ ଭିତରେ ନିଷ୍ପେଷିତ ଜନତାର ବିଦ୍ରୋହ ବା ବିପ୍ଳବର କଥା ସେ ସବୁକୁ ଏକ ନାଟ୍ୟରୂପଦେଇ ମଞ୍ଚ ଉପରେ ବିଭିନ୍ନ ଚରିତ୍ର ମୁହଁରେ ସଂଳାପ ମାଧମରେ ଦୃଶ୍ୟ ପରେ ଦୃଶ୍ୟ ଅଭିନୟ କରି ଦେଖାଇ ଦର୍ଶକଙ୍କୁ ପ୍ରଭାବିତ କରିବା....(ଓଡ଼ିଆ ଲୋକନାଟ୍ୟ: ପୃ:୧୬୧) କିମ୍ବା ଘ ଘ )' ଓଡ଼ିଶାର ନାଟ୍ୟକାରମାନଙ୍କୁ ସମ୍ପୂର୍ଣ୍ଣ ରିଏଲିଷ୍ଟିକ୍ (ବାସ୍ତବବାଦୀ) ହେବାକୁ ପଡ଼ିବ ଏବଂ ଏପରି କଥାବସ୍ତୁକୁ ଖୋଜି ବାହାର କରିବାକୁ ପଡ଼ିବ ସାଧାରଣ ଜୀବନରୁ, ଯାହା ଅଭିନୟରେ ସାଧାରଣ ଭାବରେ ସାର୍ଥକ ହୋଇ ଉଠିବ।" (ଓଡ଼ିଆ ଲୋକନାଟ୍ୟ: ପୃ:୧୮୫) । ଏହି ଦୃଷ୍ଟିକୋଣରୁ 'ଧର୍ମପତ୍ନୀ' ନାଟକର ମୂଲ୍ୟ ବିଚାର କଲେ, ଏହାକୁ ଯଥେଷ୍ଟ ପ୍ରଗତିଶୀଳ ବୋଲି ସ୍ୱୀକାର କରିବାକୁ ପଡ଼ିବ। ଏଥିରେ ଅବଶ୍ୟ ପାପପୁଣ୍ୟ, ନ୍ୟାୟ ଅନ୍ୟାୟ ଇତ୍ୟାଦିର ସଂଘର୍ଷ ମଧରୁ ହିଁ ଦ୍ୱନ୍ଦ୍ୱ ସୃଷ୍ଟି କରାଯାଇଛି। ଦୁଇଟିନାରୀ ଏବଂ ଗୋଟିଏ ପୁରୁଷ ଜଣେ ଏ ଦେଶର ସନାତନ ପରମ୍ପରାର ପ୍ରତୀକ, ସଂଧ୍ୟା ଦୀପ ପରି ଶାନ୍ତ, ପବିତ୍ର ଏବଂ ଉଜ୍ଜ୍ୱଳ,ଅନ୍ୟଟି ପ୍ରବୃତ୍ତିରେ ତୀବ୍ର ଏକାଇରମ୍ମଦୀ ଝଲକ, ଯାହା ସ୍ନାୟୁକୁ ଉତ୍ତେଜିତ କରେ ଏବଂ ଅବସାଦଗ୍ରସ୍ତ ମଧ କରିଦିଏ। ପ୍ରବୃତ୍ତି ଏବଂ ନିବୃତ୍ତିର ଚମତ୍କାର ନାଟ୍ୟ ଦ୍ୱନ୍ଦ୍ୱ ଏଥିରେ ସୃଷ୍ଟି କରାଯାଇ ପାରିଛି। ଭଲ ଏବଂ ମନ୍ଦ, ପ୍ରେମ ଏବଂ ଘୃଣା, ଶୋଷଣ ଏବଂ ଚକ୍ରାନ୍ତର ଯେଉଁ ଚିତ୍ର ଏଥିରେ ଦିଆଯାଇଛି, ଏଥିରେ ତିଳେମାତ୍ର ଅତିରଞ୍ଜନ ନାହିଁ। 'ଗାର୍ଲସ୍କୁଲ' ନାଟକରେ ଭୋଗର ଉଗ୍ର ରୂପଟିକୁ ଦେଖାଇ ଦିଆଯାଇ, ହଠାତ୍ ତାହାରି ମଧରୁ ତ୍ୟାଗର ଶାନ୍ତ, ନିରୀହ ସ୍ୱରୂପଟିକୁ ଖୋଜିଅଣାଯାଇଛି ଏବଂ ତାହାର ଶେଷପରିଣତ ହୋଇଛି ଗାନ୍ଧିବାଦୀ ଆଦର୍ଶମଧରେ। ଏଥିରେ ହୁଏତ ଦର୍ଶକମାନଙ୍କର ପ୍ରତ୍ୟାଶା ପୂର୍ଣ୍ଣ ହୋଇଛି ଏବଂ "କାବ୍ୟକନ୍ୟାୟ" ମଧ ରୂପାୟିତ ହୋଇଛି। ମାତ୍ର ଏହା ବାସ୍ତବତାଠାରୁ ଦୂରେଇ ଯାଇଛି। 'ଗାର୍ଲସ୍କୁଲ'ର କଥାବସ୍ତୁ, ସତ୍ୟଘଟଣା ଆଧାରିତ ବୋଲି ଘୋଷଣା କରାଯାଇଥିଲେ ହେଁ, ଏଥିରେ ସହର ଜୀବନ, ଏଠାକାର ଶିକ୍ଷାବ୍ୟବସ୍ଥା ସମ୍ପର୍କରେ ଯେଉଁ ବର୍ଣ୍ଣନା ଦିଆଯାଇଛି, ଅଧିକାଂଶକ୍ଷେତ୍ରରେ ତାହା ହୋଇଛି ନାଟ୍ୟକାରଙ୍କର କଳ୍ପନା ବିଳାସର ଫଳଶ୍ରୁତିମାତ୍ର। ବ୍ୟତିକ୍ରମ କେବଳ କଳ୍ପନାକୁ ପ୍ରଶ୍ରୟ ଦିଆଯାଇଥିବାର ଦେଖିବାକୁ ମିଳୁନାହିଁ। "ଗାର୍ଲସ୍କୁଲ"ରେ ହତ୍ୟା ନିମନ୍ତେ ଉଦ୍ୟମ ଅଛି, ମାତ୍ର ଏଥିରେ ହତ୍ୟା ଦେଖାଇ ଦିଆଯାଇଛି ମଞ୍ଚରେ। ଏ ସବୁ ଦୃଷ୍ଟିରୁ "ଗାର୍ଲସ୍କୁଲ" ଅପେକ୍ଷା

'ଧର୍ମପତ୍ନୀ' କୁ ଆମେ ଅଧିକ ବାସ୍ତବ ଏବଂ ପ୍ରଗତିଶୀଳ ବୋଲି କହିପାରୁଁ।

ସେହିଭଳି କାଳୀଚରଣଙ୍କର "ଭାତ" ଏବଂ ଲକ୍ଷ୍ମୀଧରଙ୍କର" ଜମିଦାର" ଏ ଉଭୟ ନାଟକ ରଚିତ ହୋଇଛି ସମାନ ବିଷୟକୁ ନେଇ ଅର୍ଥାତ୍ ଥିଲାବାଲା, ତଥା ନଥିବାଲା, ତଥା ନଥିଲାବାଲାର ସଂଘର୍ଷକୁ ନେଇ। 'ଭାତ' ନାଟକରେ ସଂଘର୍ଷ ବିଷୟ ଗୌଣ ହୋଇ ଲଘୁ ପ୍ରଣୟ ବ୍ୟାପାରହିଁ ଗୁରୁତ୍ୱ ପାଇଛି। ଏଥିପାଇଁ ନାଟ୍ୟକାର ମଞ୍ଚକୁ ଆଣିଛନ୍ତି ଦୁଇଯୋଡ଼ା ତରୁଣ ତରୁଣୀଙ୍କୁ। ସେମାନଙ୍କର ପ୍ରଣୟ ବିରହ ମିଳନ, ମାନ ଅଭିମାନର ପାଲା ଦେଖୁଁ ଦେଖୁଁ ଦର୍ଶକ ମୂଳ ପ୍ରତିପାଦ୍ୟଟି ଭୁଲିଯାଇଛି। ମାତ୍ର "ଜମିଦାର" ନାଟକରେ ଆମୂଳ ଏହି ସଂଘର୍ଷ ହିଁ ମୁଖ୍ୟ ସ୍ଥାନ ପାଇଛି।

ତାଙ୍କର ତୃତୀୟ ନାଟକ 'ଲାଲଚବୁକ୍' ଯେତେବେଳେ "ଅନ୍ନପୂର୍ଣ୍ଣା ଏ" ଗ୍ରୁପ ଦ୍ୱାରା ଅଭିନୀତ ହେଲା; ସେତେବେଳେ "ନୂଆଦୁନିଆଁ" ଲେଖିଥିଲେ; 'ଏ ନାଟକ ଓଡ଼ିଶା ରଙ୍ଗମଞ୍ଚର ଗତାନୁଗତିକତା ବିରୁଦ୍ଧରେ ଏକ ଚ୍ୟାଲେଞ୍ଜ। ସମାଜର ଥିଲାବାଲା ନଥିଲାବାଲାଙ୍କ ଭିତରେ ଯେଉଁ ଶ୍ରେଣୀ ସଂଘର୍ଷ ଚାଲିଚି, ତାର ଏକ ବାସ୍ତବ ଏବଂ ନିଖୁଣ ଚିତ୍ରଭାବରେ ଏ ନାଟକର ଅଭିନୟ ସମୟୋପଯୋଗୀ ଏବଂ ସ୍ୱାଗତ ଯୋଗ୍ୟ-" ଏହିମନ୍ତବ୍ୟ ଏକାନ୍ତ ଭାବରେ ସତ୍ୟ। କାଳୀଚରଣ ଏବଂ ଲକ୍ଷ୍ମୀଧରଙ୍କ ମଧ୍ୟରେ ଏହି ତୁଳନା କରି କାଳୀଚରଣଙ୍କ ନାଟ୍ୟ ପ୍ରତିଭାକୁ ହେୟ ପ୍ରତିପନ୍ନ କରାଇବା ଆମର ଉଦ୍ଦେଶ୍ୟ ନୁହେଁ। କାଳୀଚରଣ ବଡ଼ ଥିଲେ ନିଜ ଗୁଣରେ। ଓଡ଼ିଶାର ଆଧୁନିକ ମଞ୍ଚ ପରମ୍ପରାର ପ୍ରତିଷ୍ଠାରେ ତାଙ୍କର ଭୂମିକାକୁ ଏ ଜାତି କସ୍ମିନ୍‌କାଳେ ଭୁଲିବ ନାହିଁ। ତେବେ ଯାହା ପ୍ରଥମରୁ କୁହାଯାଇଛି, ତାହାର ପୁନରୁଦ୍ଧାର କରି ଏଠାରେ କୁହାଯାଇପାରେ ଯେ, ଓଡ଼ିଆ ନାଟକରେ ପ୍ରଗତିବାଦର ପ୍ରଶ୍ନ ଉଠିଲେ ଲକ୍ଷ୍ମୀଧରଙ୍କ ନାମହିଁ ପ୍ରଥମେ ଆସିଯିବ। କାଳୀଚରଣଙ୍କର ନାଟ୍ୟକାର ରୂପରେ ଏକ ପ୍ରତିଷ୍ଠିତ ଭାବ ମୂର୍ତ୍ତି ଥିଲା। ନିଜସ୍ୱ ଗୋଟିଏ ମଞ୍ଚଥିଲା ଏବଂ ସର୍ବୋପରି ଥିଲା ଅଧ୍ୟବସାୟ, ନିୟମିତତା। ଶ୍ରୀନାୟକଙ୍କର ଏ ସବୁ କିଛି ନଥିଲା। ଅନିୟମିତଭାବରେ ତିନିଖଣ୍ଡି ନାଟକ ଲେଖିସାରିବା ପରେ ବ୍ୟବସାୟୀ ମଞ୍ଚ ସହିତ ମତପାର୍ଥକ୍ୟ ହେତୁରୁ ସେ ସେମାନଙ୍କ ପାଇଁ ଆଉ ନାଟକ ଲେଖିଲେ ନାହିଁ। ତା' ପରେ ସେ ରହିଲେ ସୁଦୂର ଜାମସେଦ୍‌ପୁରରେ। ଓଡ଼ିଶାର ସାଂସ୍କୃତିକ ଜଗତ ସହିତ ସମ୍ପର୍କରଖିବା ସେତେବେଳେ ତାଙ୍କ ପକ୍ଷରେ ସମ୍ଭବପର ହୋଇନଥିଲା। ସେ ପୁନର୍ବାର ଯେତେବେଳେ ଓଡ଼ିଶା ଫେରିଲେ, ସେତେବେଳକୁ "ଓଡ଼ିଶା ଥିଏଟର୍ସ" ଅବଲୁପ୍ତ। "ଅନ୍ନପୂର୍ଣ୍ଣା" ସହିତ ସମ୍ପର୍କ ଭଲ ନୁହେଁ। "ରୂପଶ୍ରୀଥିଏଟର୍ସ" ସୂତିକାଗାରରେ ମୃତ୍ୟୁବରଣ କଲା। ନିଜେ

ଯେଉଁ "ଭାରତୀମନ୍ଦିର" ନାମକ ନାଟ୍ୟଦଳ ସହିତ ସମ୍ପୃକ୍ତ ଥିଲେ, ତାହାର ପାଦପ୍ରଦୀପ ମଧ୍ୟ ଜଳି ଉଠି ପାରିଲା ନାହିଁ। ସର୍ବୋପରି ତାଙ୍କ ମତରେ ଓଡ଼ିଶାର ବ୍ୟବସାୟୀ ରଙ୍ଗମଞ୍ଚକୁ ନାଟକ ଲେଖି ଦେଲେ ନାଟ୍ୟକାରର ସମ୍ମାନ ଓ ସ୍ୱାଧୀନତା ବଜାୟ ରହେ ନାହିଁ। ଖୋଦା' ଉପରେ 'ଖୋଦାଗିରି' କଲାପରି ନାଟ୍ୟାନୁଷ୍ଠାନର କଳାକାରମାନେ ଖୋଦ୍ ନାଟ୍ୟକାର ବନିଯାଇ କଟାକଟି, ଛଣ୍ଟା ଛଣ୍ଟି କରି ଏକ ଅଦ୍‌ଭୁତ ପାଣ୍ଡୁଲିପି ସୃଷ୍ଟିକରି ବସନ୍ତି। ସେମାନଙ୍କର ଏ ଯଥେଚ୍ଛାଚାର ପାଇଁ ପ୍ରସ୍ତୁତ ହୋଇପାରିଲି ନି। ଏଣୁ 'ଲାଲଙ୍କବୁକ୍' ପରେ ମୋର ଆଉ 'ନାଟକ' ଲେଖା ହୋଇନାହିଁ କହିଲେ ଚଳେ" (ଓଡ଼ିଆ ଲୋକ ନାଟ୍ୟ-ପୃ୧୭୬) ଏ ଭଳି ଅଭିଯୋଗ କେବଳ ଶ୍ରୀ ନାୟକ ନୁହନ୍ତି, ବ୍ୟବସାୟୀମଞ୍ଚ ସହିତ ସମ୍ପୃକ୍ତ ଆହୁରି ଅନେକ ନାଟ୍ୟକାର ମଧ୍ୟ କରନ୍ତି। ସ୍ରଷ୍ଟାର ଆତ୍ମସମ୍ମାନ ଯେଉଁଠି ପ୍ରଚାରର ଆକର୍ଷଣର ପାଦମୂଳରେ ନିଜକୁ ଢାଳିଦିଏ; ସେଠାରେ ଏଭଳି ଅଭିଯୋଗର କୌଣସି ମୂଲ୍ୟ ନାହିଁ।

ଶ୍ରୀନାୟକ ଓଡ଼ିଶାର ମଞ୍ଚସହିତ ସମ୍ପୃକ୍ତ ଥିଲେ ପ୍ରାୟ ଦଶବର୍ଷ। ଏହି ସମୟ ମଧ୍ୟରେ ସେ ତିନିଖଣ୍ଡି ନାଟକ ରଚନା କରିଛନ୍ତି ଏବଂ ସେଗୁଡିକ ସେ-କାଳରେ ବେଶ୍ ଲୋକପ୍ରିୟ ମଧ୍ୟ ହୋଇଥିଲା। ବ୍ୟକ୍ତିଗତ କାରଣରୁ ସେ ଏହାପରେ ବ୍ୟବସାୟୀମଞ୍ଚଠାରୁ ଦୂରେଇଗଲେ। ଏହି ବ୍ୟବଧାନ ସୃଷ୍ଟିହୋଇଥିଲା ମୁଖ୍ୟତଃ ତାଙ୍କର ଆତ୍ମସମ୍ମାନବିଷୟକ ସତର୍କତା ହେତୁରୁ। ନାଟକ ନିମନ୍ତେ ପାରି ଶ୍ରମିକର ପ୍ରଶ୍ନ ପ୍ରଥମେ ସେ ହିଁ ଉଠାଇଥିଲେ। ଏହାର ସୁଫଳ ପରବର୍ତ୍ତୀ କାଳର ନାଟ୍ୟକାରମାନେ କିଛି କିଛି ପାଇଛନ୍ତି। ତେବେ ଗୋଟିଏ କଥା ଏଠାରେ କୁହାଯାଇ ପାରେ ତାହା ହେଉଛି ଏହି ଯେ, ଶ୍ରୀନାୟକଙ୍କର ଏହି ଅଭିମାନ ଓଡ଼ିଆ ନାଟକ ପାଇଁ ଆଦୌ ଶୁଭଙ୍କର ହୋଇନାହିଁ। ରାମଚନ୍ଦ୍ର ମିଶ୍ର, ଭଞ୍ଜକିଶୋର ପଟ୍ଟନାୟକ, ଗୋପାଳ ଛୋଟରାୟ ପ୍ରମୁଖ ଏହି ସମୟରେ ନାଟ୍ୟକାର ତ୍ରୟୀ କିମ୍ବା କବିଚନ୍ଦ୍ର କାଳୀଚରଣ -ନାଟ୍ୟକାର ହିସାବରେ ଓଡ଼ିଆ ନାଟ୍ୟକ୍ଷେତ୍ରରେ ଯେଉଁ ଆସନ ଲାଭ କରିଛନ୍ତି; କେବଳ ମାତ୍ର ଦୂରେଇ ରହିବା ଦ୍ୱାରା ଲକ୍ଷ୍ମୀଧର ସେଇ ସୁଯୋଗଟିକୁ ହାତଛଡ଼ା କରିଛନ୍ତି। ନଚେତ୍ ଯେଉଁ ବିପୁଳ ସମ୍ଭାବନାର ଇଙ୍ଗିତ ଦେଇ ଶ୍ରୀନାୟକ ଆତ୍ମପ୍ରକାଶ କରିଥିଲେ, ଅନ୍ତତଃ ସେ କାଳରେ ପ୍ରଗତିଶୀଳତାର ଯେଉଁ ଅନନ୍ୟ ଦୃଷ୍ଟାନ୍ତ ସେ ମଞ୍ଚରେ ସ୍ଥାପନ କରି ପାରିଥିଲେ, ତାହା ତାଙ୍କୁ ଏକଦା ଯେ, ନିଶ୍ଚିତଭାବରେ ଶୀର୍ଷ ସ୍ଥାନକୁ ନେଇଯାଇ ଥାଆନ୍ତା, ଏଭଳି ମନେକରିବାର ଯଥେଷ୍ଟ କାରଣ ରହିଛି।

ଶ୍ରୀ ନାୟକଙ୍କ ରଚନାରେ ଦୋଷତ୍ରୁଟି ଯେ ଆଦୌ ନାହିଁ, ଏଭଳି କୁହାଯାଇ ପାରିବ

ନାହିଁ। ସଂଳାପରେ 'ହୁବହୁ', 'ନାନାନ୍', 'ବଲିହାରୀ' ପ୍ରଭୃତି ବଙ୍ଗଳା ଶବ୍ଦର ଯେଉଁ ପ୍ରଚୁର ବ୍ୟବହାର କରାଯାଇଛି, ତାହା ଓଡ଼ିଆମାନଙ୍କପାଇଁ ଏକାନ୍ତ ଶ୍ରୁତିକଟୁ ହୋଇଛି। ଦୀର୍ଘକାଳ ପ୍ରବାସୀ ହୋଇଯିବା ଫଳରେ ଏଗୁଡ଼ିକ ହୁଏତ ସ୍ୱାଭାବିକ ଭାବରେ ନାଟ୍ୟକାରଙ୍କର କଳ୍ପନା ମଧ୍ୟକୁ ପ୍ରବେଶ କରିଛି ଏବଂ ଏହାର ବ୍ୟବହାର ସମ୍ପର୍କରେ ନାଟ୍ୟକାର ମଧ୍ୟ ଆଦୌ ସଚେତନ ନୁହଁନ୍ତି। ତଥାପି ଏଗୁଡ଼ିକ ପରିହାର କରାଯାଇ ପାରିଥିଲେ ଅନ୍ତତଃ ନାଟକଗୁଡ଼ିକର ସାହିତ୍ୟିକ ମର୍ଯ୍ୟାଦା ଆହୁରି ବୃଦ୍ଧିପାଇ ପାରିଥାଆନ୍ତା। ଅନ୍ୟଥା ତାଙ୍କର ତିନୋଟିଯାକ ନାଟକରେ ଯେଉଁ ପ୍ରଚଣ୍ଡ 'ଗତିବେଗ' ରହିଛି, ତାହା ସମସାମୟିକ ଅନ୍ୟ ନାଟକରେ ଦେଖିବାକୁ ବିରଳ। ଏ କଥା ସମସ୍ତେ ଜାଣନ୍ତି ଯେ, ପ୍ରତ୍ୟେକ ନାଟକର ମୂଳରେ କୌଣସି ନା କୌଣସି ଦ୍ୱନ୍ଦ୍ୱ ରହିଥାଏ। ଏହି ଦ୍ୱନ୍ଦ୍ୱ ବା ସଂଘର୍ଷ ହେଉଛି ପୁଣି ଜୀବନର ଅନିବାର୍ଯ୍ୟ ଅଙ୍ଗ। ନାଟକ ଜୀବନର ଅଭିବ୍ୟକ୍ତି ହୋଇଥିବାରୁ ଏଥିରେ ସଂଘର୍ଷ ଅନ୍ତଃପ୍ରବାହୀହୋଇ ରହିଥାଏ। ହଡ୍‌ସନ୍‌ଙ୍କ ମତରେ, "ପ୍ରତ୍ୟେକ ନାଟକୀୟ କଥାର ଉନ୍ମେଷ କୌଣସି ଏକ ସଂଘର୍ଷରୁ ହିଁ ହୋଇଥାଏ, ଯାହା ବିରୋଧୀ ବ୍ୟକ୍ତିତ୍ୱ, ଭାବ ବା ସ୍ୱାର୍ଥର ପାରସ୍ପରିକ ଦ୍ୱନ୍ଦ୍ୱରୁ ହିଁ ସୃଷ୍ଟି ହୋଇଥାଏ। ସଂଘର୍ଷ ଯେଉଁ ଧରଣର ହେଉନା କାହିଁକି, ନାଟକୀୟ କଥାବସ୍ତୁ ନିମନ୍ତେ ତାହା ଏକାନ୍ତ ଅପରିହାର୍ଯ୍ୟ। ସଂଘର୍ଷର ଆରମ୍ଭରେ ହିଁ ପ୍ରକୃତ କଥା ବସ୍ତୁର ଆରମ୍ଭ ହୋଇଥାଏ ଏବଂ ଏହାର ପରିସମାପ୍ତି ସହିତ କଥାବସ୍ତୁର ସମାପ୍ତି ଘଟିଥାଏ। (ଇଭ ଓଭାୟବ୍ବବ୍ତୟଙ୍କମଷସବ୍ଭ ଷ୍ବବ୍ ଷଷର ଝଷ୍ଙ୍କୟଛ ବ୍ଲ ଖସଷରବ୍ବବଷଙ୍କବ୍ବର. ଚ. ୧୯୯) ଏହି ଦ୍ୱନ୍ଦ୍ୱ ବା ସଂଘର୍ଷ ପୁଣି ଦୁଇ ପ୍ରକାରର। ଅନ୍ତର୍ଦ୍ୱନ୍ଦ ଏବଂ ବହିର୍ଦ୍ୱନ୍ଦ। ଘଟଣାପ୍ରବାହର କୁଟିଳଗତି ଚରିତ୍ରର ମନଲୋକରେ ଯେଉଁ ସଂକ୍ଷୋଭ ସୃଷ୍ଟିକରେ, ତାହା ହେଉଛି ଅନ୍ତର୍ଦ୍ୱନ୍ଦ ଏବଂ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ପାରସ୍ପରିକ ସ୍ୱାର୍ଥଜନିତ ଯେଉଁ ବାହ୍ୟ ସଂଘର୍ଷହୋଇଥାଏ ତାହା ହିଁ ବହିର୍ଦ୍ୱନ୍ଦ୍ୱ। ଶ୍ରୀ ନାୟକ ନିଜର ତିନୋଟିଯାକ ନାଟକରେ ଉଭୟ ପ୍ରକାର ଦ୍ୱନ୍ଦ୍ୱର ବ୍ୟବସ୍ଥା କରିଛନ୍ତି। ଫଳରେ ତାଙ୍କର ନାଟକ ଗୁଡିକ ପ୍ରଶ୍ନରୁ ଉତ୍ତର ଆଡ଼କୁ ଗତି କରିଛି। ଅନିଶ୍ଚିତଠାରୁ ନିଶ୍ଚିତ ଆଡ଼କୁ ଆଗେଇଯାଇଛି। ଏଥିରେ ପ୍ରଶ୍ନରୁ ସମସ୍ୟା ଆତ୍ମପ୍ରକାଶ କରିଛି ଏବଂ ଉତ୍ତର ଆସିଛି ସମସ୍ୟା ଗୁଡ଼ିକର ଉପଯୁକ୍ତ ସମାଧାନରୁ। ବିଷୟବସ୍ତୁ ପୁଣି ସମସ୍ୟାମୂଳକ ହୋଇଥିବାରୁ ତୀବ୍ରସଂଘର୍ଷ ଦ୍ୱାରା ହିଁ ଏ ଗୁଡ଼ିକର କଳାତ୍ମକ ରୂପ ଫୁଟି ଉଠିଛି। ପ୍ରଥମ ନାଟକରେ ଏକ ବିବାହିତ ପୁରୁଷର ସମସ୍ୟା, ଶେଷ ନାଟକରେ ଶାସନଗତ ସମସ୍ୟା ଏବଂ ଦ୍ୱିତୀୟ ନାଟକରେ ଜମିଦାର ପ୍ରଜା ସମସ୍ୟାର ବିକାଶ ଏବଂ ସୌନ୍ଦର୍ଯ୍ୟ

ସୁନିର୍ବାଚିତ ମାର୍ମିକ ଘଟଣାବଳୀର ଦ୍ୱନ୍ଦ୍ୱମୂଳକ ଅଭିବ୍ୟକ୍ତିରେ ହିଁ ହୋଇଛି । ସଂଘର୍ଷ ଏହି ସବୁ ନାଟକରେ ଗତିବେଗ ଆଣିଦେଇଛି । ଛୋଟ ଛୋଟ ଗତିଶୀଳ ଦୃଶ୍ୟ ସାହାଯ୍ୟରେ ଏହି କାର୍ଯ୍ୟଟି କରାଯାଇଛି । ନାଟକର କଥାବସ୍ତୁ ହେଉଛି ସାଧାରଣତଃ କେତେକ ଘଟଣା କଳାତ୍ମକ ସମାହାର । ନାଟ୍ୟକାର ନାୟକ ନିଜ ନାଟକର ଘଟଣା ବଳୀକୁ ହିଁ ଗୁରୁତ୍ୱ ଦେଇଛନ୍ତି, ଯାହା ଫଳରେ ଚରିତ୍ରର କାର୍ଯ୍ୟ, ଆରୋହ ଏବଂ ଅବରୋହ ଚମତ୍କାର ଭାବରେ ଦେଖାଇ ଦିଆଯାଇପାରିଛି । ଘଟଣା କିମ୍ବା ଚରିତ୍ର କାର୍ଯ୍ୟ ଏବଂ କାରଣ ଦ୍ୱାରା ଅନୁବଂଧିତ ହୋଇ ଅତ୍ୟନ୍ତ କ୍ଷିପ୍ର ଗତିରେ ନିଜକୁ ବିସ୍ତୃତ କରିବା ଫଳରେ, ନାଟକଗୁଡିକ ଗତିଶୀଳ ହୋଇପାରିଛି ।

ଏ ସମ୍ପର୍କରେ ତତ୍କାଳୀନ ସାମାଜିକ ନାଟକ "ଗାର୍ଲସ୍କୁଲ," "ଭାତ" "ମୂଲିଆ" ପ୍ରଭୃତିକୁ ବିଚାର କରାଯାଇପାରେ । ପୁରୁଷର ବହୁନାରୀ ସମ୍ଭୋଗ କାମନା 'ଧର୍ମପତ୍ନୀ' ନାଟକରେ ଯେଉଁ ତୀବ୍ରସଂଘର୍ଷ ଏବଂ ଗତି ସୃଷ୍ଟି କରିଛି, ଏସବୁ ନାଟକରେ ତାହା ହୋଇ ପାରିନାହିଁ ।

ନାଟ୍ୟକାର ନାୟକ ବ୍ୟବସାୟୀମଞ୍ଚ ନିମନ୍ତେ ମାତ୍ର ତିନୋଟି ନାଟକ ଲେଖିଥିଲେ ହେଁ 'ରକ୍ତ ପତକା', 'ଲଢ଼େଇଚାଲିଛି', 'ନଟୀଅନୁରାଧା' ଏବଂ 'ସେଇ କ୍ରାନ୍ତିର ହାତ' ପ୍ରଭୃତି ନାଟକ ମଧ ଲେଖିଥିବାର ଜଣାଯାଇଛି । ହୁଏତ ଏଗୁଡିକ ସୌଖୀନ୍ ମଞ୍ଚରେ ଅଭିନୀତ ହୋଇଥିବ । ଓଡ଼ିଶାର ବ୍ୟବସାୟୀ ମଞ୍ଚ ସହିତ ମଧ ତାଙ୍କର ସମ୍ପର୍କ ରହିଥିଲା । ଅନ୍ତତଃ ଅନ୍ନପୂର୍ଣ୍ଣା, ରୂପଶ୍ରୀ ଏବଂ ଭାରତୀ ନାଟ୍ୟ ମନ୍ଦିର ସହିତ ତାଙ୍କର ନିବିଡ଼ ସମ୍ପର୍କ ଥିଲା । ଶେଷୋକ୍ତ ଦୁଇମଞ୍ଚ ନିମନ୍ତେ ତାଙ୍କର କିଛି ତ୍ୟାଗ ମଧ ରହିଛି । ତେବେ ଓଡ଼ିଶାରେ ସେ ପରିଚିତ ଜଣେ ନାଟ୍ୟକାର ଭାବରେ ଓଡ଼ିଆ ନାଟକରେ ପ୍ରଗତିବାଦ ସମ୍ପର୍କରେ ଯେତେବେଳେ ଆଲୋଚନା ହେବ, ସେତେବେଳେ ଶ୍ରୀ ନାୟକ ଏବଂ ତାଙ୍କ ରଚିତ ନାଟକ ଗୁଡିକର ପ୍ରସଙ୍ଗ ଆପେ ଆପେ ଆସିଯିବ ତଥା ଓଡ଼ିଶାର ବିପ୍ଳବୀ ନାଟ୍ୟକାର ରୂପରେ ମଧ ଶ୍ରୀ ନାୟକ ପ୍ରଥମେ ହିଁ ଆଲୋଚିତ ହେବ ।

* * *

# 'ଖୋଲାଝର୍କା'ର ଦୃଶ୍ୟ ଓ ଦୃଶ୍ୟାନ୍ତର

ଗୋପାଳ କୃଷ୍ଣ ଦାସ

"Poetry is not the expression of emotions but an escape from it-it is not an expression of personality but an escape from it."- T.S.ELIOT

ସାଂପ୍ରତିକ ଓଡ଼ିଆ ସାହିତ୍ୟ ପରିମଣ୍ଡଳରେ କବି ଲକ୍ଷ୍ମୀଧର ନାୟକ ଏକ ସୁପରିଚିତ ଓ ସୁପ୍ରତିଷ୍ଠିତ ପ୍ରତିଭା, କବିତା ଦିଗବଳୟରେ ପ୍ରତିଶ୍ରୁତିର ଦୀପ୍ତଭାନୁ, ଏକ ଉତ୍ସର୍ଗୀକୃତ ଆତ୍ମା ଓ ଏକ ସୌନ୍ଦର୍ଯ୍ୟଲିପ୍‌ସୁ ମନ । ଆଖି ଆଗରେ ତାଙ୍କର ଏକ କଥାକୁହା ଖୋଲାଝର୍କା । ବଉଦିଆ ଆକାଶ ପ୍ରାନ୍ତର, ଇସ୍ପାତ ସହର, ସିନ୍ଦୂରିତ ଦିଗ୍‌ବଳୟ ପ୍ରତି କବି ଅନ୍ତରରେ ଅପରିସୀମ ମୋହ । ଅସନ୍ତିରେ ଛଟପଟ ହେଉଥିବା ଲକ୍ଷ୍ମୀଧର ନାୟକଙ୍କ ଭିତରେ ସେହି 'କବି ମଣିଷ'ଟି ଖୋଲାଝର୍କା ଦେଇ ହଠାତ୍ ବାହାରି ଆସେ । ଏକ ତୀବ୍ର ଉତ୍ତେଜନାରେ ଦେହମନ ପ୍ରାଣ ସ୍ପନ୍ଦିତ ହୋଇଉଠେ । ନିର୍ଜନ ପ୍ରହରରେ ବନ୍ଦୀ ଜୀବନକୁ ଶବ୍ଦମୟ, ଧ୍ୱନିମୟ ଆଉ ସ୍ପର୍ଶମୟ କରେ ଆବଦ୍ଧ ପ୍ରକୋଷ୍ଠର ଖୋଲାଝର୍କା । ଏଇ ଖୋଲାଝର୍କା ଦେଇ ମୁକ୍ତ ପ୍ରତିଭାତ କିନ୍ତୁ ବାସ୍ତବରେ ବନ୍ଦୀ ମଣିଷଙ୍କ ପୃଥିବୀ ଓ ଶୂନ୍ୟ ଦିଗବଳୟକୁ ଦେଖି ମାନସିକ ନିର୍ଯାତନା ଭୋଗୁଥିବା ମଣିଷଟି କି ପ୍ରେରଣା ପାଏ କେଜାଣି ଇମୋସନ୍‌ର ଧକ୍‌କାରେ ଅଧୀର ଓ ଆକୁଳ ହୋଇଉଠେ ତାର ମନ । ଫଳ ସ୍ୱରୂପ ଯେଉଁ ପଂକ୍ତିର ଉଚ୍ଚାରଣ ସ୍ୱତଃ ପ୍ରବୃତ୍ତ ହୋଇ ହୃଦୟରୁ ନିସୃତ ହୁଏ ତାହାର ଶିଳ୍ପରୂପ ଏହି କବିତାଗୁଚ୍ଛ । ଶ୍ରୀ ନାୟକ ଆପଣାର ଇମୋସନର ଉତ୍ସ ସଂପର୍କରେ କହିଛନ୍ତି-

ଆଶ୍ଚର୍ଯ୍ୟ ଏ ଅନୁଭୂତି, ସେ ଦିନ ଯେହେତୁ
ଭାଷା ସୀମାବିବାଦର ମୁଁ ଏକ ଆସାମୀ
ଜୀବନେ ପ୍ରଥମ କରି ସମାଜଠୁ ବିଚ୍ଛିନ୍ନ ହେବାର ଜ୍ୱାଳାରେ ଅସ୍ଥିର
ଜଳୁଥିଲି ବିଦ୍ରୋହ ଶପଥେ
ଭାଙ୍ଗିବାର ବହୁ ଚେଷ୍ଟାକରି ହାଜତ କବାଟ, ବ୍ୟର୍ଥଯେବେ
ଏକ ନୀଳ ଅଗ୍ନିଳ ସଂକେତ ଦିଏ ଖୋଲାଝର୍କା ମତେ ।

ଏଇ ଖୋଲାଝର୍କା ପ୍ରସିଦ୍ଧ ଇଂରାଜୀ ଲେଖକ କୀଟ୍‌ସ ଓ ହ୍ୟୁହରବର୍ଟ୍ ମୁନ୍‌ରୋଙ୍କଠାରୁ ଆରଂଭକରି ଓଡ଼ିଆ କବିମାନଙ୍କ ପର୍ଯ୍ୟନ୍ତ ବହୁ ଆଧୁନିକ କବି ମାନସକୁ ନୂତନ ଚିନ୍ତା ଚେତନା ଦେଇଛି । କବି ଲକ୍ଷ୍ମୀଧର ନାୟକଙ୍କ ଦୃଷ୍ଟିକୁ ଆଦିଗନ୍ତ ଓ ସୁଦୂର ପ୍ରସାରୀ କରିଛି । ସମୟର

ବେଳାଭୂଇଁରେ ନିଃସଂଗ ପଦପାତ କରିଥିବା ନିସ୍ୱ ମଣିଷ ଚଳମାନ ସମାଜର ଅନ୍ୟାୟ ଅବିଚାରର ଝଡ଼ଝଞ୍ଜା କିପରି ସହୁଚି ତାକୁ ଆନ୍ତରିକତାର ସହ କବି ଶ୍ରୀ ନାୟକ ଅନୁଧ୍ୟାନ ଓ ଅନୁଶୀଳନ କରିଛନ୍ତି । ସେ ବିଶ୍ୱାସ କରିଛନ୍ତି ଯେ ବର୍ତ୍ତମାନ ସମୟ ଓ ସମାଜର ଅକ୍ଟୋପାଶ୍ ବନ୍ଧନରୁ ମଣିଷର ମୁକ୍ତି ନାହିଁ । ତେଣୁ ତାଙ୍କ ମନରେ ଏକମାତ୍ର ଆଶା-ଆଗାମୀ ସମାଜ ହେଉ ମୁକ୍ତ ମଣିଷର ସମାଜ । ଏଥିପାଇଁ ବିପ୍ଳବର ଆବାହନ ଆବଶ୍ୟକ । କେବଳ ଅନ୍ତର୍ଦାହ ମଧ୍ୟରେ ଏ ବିପ୍ଳବର ଯୁଦ୍ଧବେଦୀ ପ୍ରସ୍ତୁତ ହୋଇ ପାରେନା । ତେଣୁ ସକ୍ରିୟ ବିପ୍ଳବର ଆଗମନୀରେ କବିପ୍ରାଣ ବନ୍ଦନାକରି ଉଠିଛି-

ସବୁକିଛି ଜାଳିଦେବା ରକ୍ତାକ୍ତ ଶପଥେ ଲାଲ କୃଷ୍ଣଚୂଡ଼ା
ଜାଣିଛି ମୁଁ ମେଘମନ୍ଦ୍ରେ ଝଡ଼ର ବିଦ୍ୟୁତେ, ଆସିବଇ ଡକା
ତେଣୁ କରିଚି ଅପେକ୍ଷା
ଆଖି ଆଗେ ସେଇ ଖୋଲାଝର୍କା

ବ୍ରିଟିଶ ସାମ୍ରାଜ୍ୟବାଦୀର ନିସ୍ପେଷଣରୁ ଭାରତକୁ ମୁକ୍ତ କରିବାପାଇଁ ଯେଉଁ ଯୁଗଜନ୍ମାମାନେ ଶହୀଦତ୍ୱ ବରଣ କରିଛନ୍ତି, ବ୍ୟକ୍ତିଗତ ସୁଖ ସଂଭୋଗ ଓ ସଂଭାବନାକୁ ଭୁଲିଛନ୍ତି, ମାନବାତ୍ମାର ମୁକ୍ତିପାଇଁ ଆତ୍ମାହୁତି ଦେଇ ନିଖିଳ ସତ୍ତାଭିତରେ ଅଖିଳ ହୋଇ ଯାଇଛନ୍ତି; ସେମାନଙ୍କ ମଧ୍ୟରୁ ବିପ୍ଳବୀ ନେତାଜୀ ସୁଭାଷ ବୋଷଙ୍କ ଉଦ୍ଦେଶ୍ୟରେ ସଶ୍ରଦ୍ଧ ଅର୍ପିତ ଏଇ ଖୋଲାଝର୍କାର କାବ୍ୟ ସ୍ୱରରେ ଏକ ନୂତନ ଉଚ୍ଚାରଣର ସ୍ୱାଭିମାନ ପୁରି ରହିଛି ।

ଆଧୁନିକ ଓଡ଼ିଆ କବିତାର ଉତ୍ତରଣ ପର୍ବରେ ଯେଉଁ ଯଶସ୍ୱୀ ପ୍ରଭାବଶାଳୀ କାବ୍ୟ ସ୍ୱରୂପ ଦେଖିବାକୁ ମିଳେ, ଅତି ଅବିସମ୍ବାଦିତ ଭାବେ ଓଡ଼ିଆ ସାହିତ୍ୟରେ ୧୯୩୫-୩୬ ପରେ ଆସିଥିବା ନୂତନ ଧାରାର ଜଣେ ସଚେତନ ଅନୁବ୍ରତୀ ହେଉଛନ୍ତି କବି ଲକ୍ଷ୍ମୀଧର ନାୟକ । "ସାହିତ୍ୟରେ ବିପ୍ଳବ ପ୍ରଚାର କରି ଜାତୀୟ ଜୀବନରେ ଚଞ୍ଚଳତାର ସୂଚନା ଦେବା ନିମନ୍ତେ (ନବଭାରତ) ନବଯୁଗ ସାହିତ୍ୟ ସଂସଦର ମୁଖପତ୍ର "ଆଧୁନିକ" (ମେ-୧୯୩୬) ଯୁଗାନ୍ତର ବାର୍ତ୍ତା ବହନ କରି ଆସିଥିବା କଥା ଉଦ୍‌ଘୋଷଣ କରାଯାଇଥିଲା ।

ତେଣୁ ଦୀର୍ଘ ୬୫ବର୍ଷ ଧରି (୧୮୭୦-୧୯୩୫) ପ୍ରଚଳିତ ଏକ ରୋମାଣ୍ଟିକ ଆଧିଭୌତିକ ଜାତୀୟବାଦୀ କାବ୍ୟାଧାରା (ରାଧାନାଥ ଯୁଗଠାରୁ ସବୁଜ ଓ ମାନସିଂହ ପର୍ଯ୍ୟନ୍ତ) ସ୍ପଷ୍ଟତଃ ଏକ ଭିନ୍ନ ଦିଗରେ ପରିଚାଳିତ ହେଲା । ଏଇ ପରିବର୍ତ୍ତନର ଯଥାର୍ଥ ସତୀର୍ଥ କବି ଅନନ୍ତ ପଟ୍ଟନାୟକ, ମନମୋହନ ମିଶ୍ର, ଲକ୍ଷ୍ମୀଧର ନାୟକ, ରଘୁନାଥ ଦାସ ପ୍ରଭୃତି ଓଡ଼ିଆ କବିତାରେ ଆଙ୍ଗିକ ଓ ଆତ୍ମିକ ପରୀକ୍ଷା ନିରୀକ୍ଷା ଚଳାଇଥିଲେ । ମାର୍କସଙ୍କ ପ୍ରବର୍ତ୍ତିତ ସାମ୍ୟବାଦୀ ଭାବଧାରାରେ ଭାରତୀୟ ଚିନ୍ତା, ଦର୍ଶନ, ସ୍ୱୈରବାଦ ଓ ଗାନ୍ଧୀବାଦର ପ୍ରବଳ ପ୍ରଭାବ ସମସାମୟିକ କବିମାନଙ୍କ ମାନସରାଜ୍ୟରେ ପ୍ରତିଫଳିତ ହୋଇଥିବାରୁ ବୈପ୍ଳବିକ

ମାର୍କସବାଦ ଅପେକ୍ଷା ମାନବିକତାର ବିପୁଳ ପ୍ରତିଶ୍ରୁତି ଏମାନଙ୍କ କବିତାରେ ଅଧିକ ଲକ୍ଷଣୀୟ। ସ୍ୱାଭାବିକଭାବେ ଏ ସମୟରେ ଭାରତୀୟ କାବ୍ୟ ସ୍ୱରରେ ସ୍ୱାଧୀନତା ଜନିତ ମୋହ ଓ ମୋହଭଙ୍ଗ, ଯୋଜନା ଓ ଏହାର ବିଫଳତା, ନିର୍ବାଚନ ଓ ପ୍ରତାରଣାମୂଳକ ପ୍ରତିଶ୍ରୁତି, ରାଜନୈତିକ ଅନିଶ୍ଚିତତା ଆର୍ଥନୀତିକ ଅସାମ୍ୟ, ଯୁଦ୍ଧ ଓ ତତ୍‌କାଳୀନ ଏକବିସ୍ଫୋରଣମୁଖୀ ଜାତୀୟଭାବ ସଂଗଠିତ ହୋଇଛି। ଏହିପରି ବ୍ୟାପକ ସମାଜ ଓ ଜାତୀୟ ପୃଷ୍ଠଭୂମିରେ ସଚେତନ କବି ଅତି ଉତ୍କଟ ପ୍ରତାରଣା ଉପଲବ୍ଧି କରିଛି। ତେଣୁ କବିତାରେ ଏକ ଉତ୍କଟ ହତାଶା, ନିରାଶା ନିଃସଙ୍ଗତା, ମାନସିକ ସଂଘର୍ଷ ଓ ଅନିଶ୍ଚିତଭାବ ପରିଲକ୍ଷିତ ହୁଏ। କବି ଲକ୍ଷ୍ମୀଧରଙ୍କ କାବ୍ୟ ଆଭିମୁଖ୍ୟରେ ଯେଉଁ ବୈପ୍ଳବିକ ପରିବର୍ତ୍ତନ ଆସିଛି, ତାହା ଅନେକ ପରିମାଣରେ ସମସାମୟିକ ସମାଜ ଓ ରାଜନୈତିକ ଆନ୍ଦୋଳନ ଦ୍ୱାରା ନିୟନ୍ତ୍ରିତ।

କବି ଲକ୍ଷ୍ମୀଧର ନାୟକଙ୍କ ଜୀବନର ବିପୁଳାଂଶ ଓଡ଼ିଶାର ବିଛିନ୍ନାଞ୍ଚଳ ସିଂହଭୂମି, ଜାମ୍‌ସେଦପୁର ଓ ରାଉରକେଲା ଇତ୍ୟାଦି ଶିଳ୍ପାଞ୍ଚଳରେ କଟିଛି।

ଝଡ଼ର ବିଦ୍ୟୁତ ଓ ରୌଦ୍ରର ଦହନ ନେଇ ଯେଉଁ ଇସ୍ତାହାର ପ୍ରକାଶ ପାଏ ତାହା ହିଁ ବୟାଳିଶଟି କବିତାର ସଂକଳନ- ଏଇ ଖୋଲାଝର୍କା। ଖୋଲାଝର୍କାରେ ପ୍ରବହମାନ କବିଙ୍କ ଆବେଗର ଉତ୍ସ ସାଧାରଣ ପରିବେଶ ନୁହେଁ, ଏକ ପ୍ରକାର ସଂଗ୍ରାମୀ ମାନସିକତାରୁ ଏହାର ଅଙ୍କୁରୋଦ୍‌ଗମ।

"Art belongs to people, its roots should be deeply implanted in the very thick of the labouring masses. It must unite and elevate their feeling, thougts and will. It must stir to activity and develop the art instincts within them."-Lenin.

ପୃଥିବୀର ଅନ୍ୟତମ ବିପ୍ଳବୀ କବି ମଧ କହିଛନ୍ତି-

" What then are the necessary condition for getting one's poetic work started the existence of a social task that can be accomplished only through poetic work. There must be social command."

Mayakovsky

କବିତା ଆମରି ଦାହ, ଲହୁ, ଲୁହ, ଦୁଃଖ, କ୍ରୋଧ ଓ ସଂଗ୍ରାମ ସମଷ୍ଟିରେ ଏକ ସାମାଜିକ ଅସ୍ତ୍ର, ଆମର ଅନାବିଳ, ଅକୃତ୍ରିମ ପ୍ରେମ, ଆମର ଅସ୍ତିତ୍ୱ, ମଣିଷ ମୂର୍ଦ୍ଧରେ ଭଲ ପାଇବାର ଭାଷା ସେ ଫୁଟାଏ। ନୂତନ ଫସଲର ସୁରଭିରେ ସେ ଭରିଦିଏ ସବୁଜ କିଆରିରେ ଚଉଦିଗ। କେତେବେଳେ ପ୍ରତିଟି ଧୂଳିକଥା ଭିଜିଯାଏ ମଣିଷର ରକ୍ତ ବିନ୍ଦୁରେ। ବୈଶାଖୀ କ୍ରୋଧର

ଝଂକାହୋଇ ଜନ୍ମନିଏ ଖୋଲାଝର୍କାର କାବ୍ୟ ପୁରୁଷ। ଜୀବନର ଶ୍ମଶାନର ଅନଳଭିତରୁ ସେ କାଢ଼େ ଚେତନାର ହୁ ହୁ ଶବ୍ଦ। ତାରି ଭିତରେ ସେ ଆତ୍ମ ବିସର୍ଜନ କରେ। କବିତା ହାତୁଡିର ଶବ୍ଦରେ ମୁଖରିତ କରେ ଚିରତନ୍ଦ୍ରାତୁର ମଧ୍ୟବିତ୍ତ ବୁଦ୍ଧିଜୀବୀ ସମାଜକୁ।

ପୃଥିବୀର ଅବହେଳିତ ମଣିଷର ମୁକ୍ତିପିପାସା ପାଇଁ କବି ଆଗ୍ନେୟ ଆହ୍ୱାନ ଦିଏ। ସମଗ୍ର ପୃଥିବୀ ପୁଞ୍ଜିବାଦୀ ଓ ସାମ୍ୟବାଦୀ ଶିବିରରେ ବିଭକ୍ତ ହୋଇଥିଲେ ମଧ୍ୟ ସାଧାରଣ ମଣିଷ ପାଇଁ କେଉଁଠିରେ ହେଲେ ନିଷ୍କୃତି ମିଳେନା। ଅତି ଅସହାୟ ଭାବରେ ମଣିଷ ଖୋଜେ ମୁକ୍ତିର ପଥ। ଜୀବନର ଅଂଧଗଳିରେ ଖୋଜେ ବିସ୍ତୀର୍ଣ୍ଣ ପ୍ରାନ୍ତର। ଏଇ ଖୋଜା କାର୍ଯ୍ୟରେ ପାଶ୍ଚାତ୍ୟ ସାହିତ୍ୟରେ ସରରିୟାଲିଷ୍ଟ ଗୋଷ୍ଠୀ, ଇଂଲଣ୍ଡର ଅଡେ଼ନ ଗୋଷ୍ଠୀ, ଫ୍ରାନ୍ସର ଆରାଗାଁ ଭଳି ବହୁ ପ୍ରସିଦ୍ଧ କବିମାନଙ୍କ ଭୂମିକା ତାତ୍ପର୍ଯ୍ୟପୂର୍ଣ୍ଣ। ଏଇ ଭାବଧାରାରେ କବିର ମାନସିକ ଦହନର ଯେଉଁ ଉତ୍ତାପ ପ୍ରକଟିତ ତାହାକୁ ଏକ ସାର୍ଥକ ସାମାଜିକ ବିସ୍ଫୋରଣର ଆୟୁଧ ରୂପେ ପ୍ରୟୋଗ କରି ଶ୍ରୀଯୁକ୍ତ ନାୟକ ଏକ ସମ୍ମୁଖ ସଂଗ୍ରାମର ଉଦ୍ଧତ ଓ ଆଗ୍ନେୟ ସ୍ୱର ଉଚ୍ଚାରଣ କରିଛନ୍ତି। ଯୁଗେ ଯୁଗେ ଯେତେ ଅତ୍ୟାଚାର ମାନବଆତ୍ମାକୁ ପୀଡ଼ିତ କରିଛି ତାର କୈଫିୟତ ମାଗିବାକୁ ଆଜି ସମୁଚିତ ସମୟ ସମାଗତ। ଏହି ନିଷ୍ପେଷିତ ନିରନ୍ନ ମଣିଷର ଅନ୍ତିମ ବିଜୟ ସୁନିଶ୍ଚିତ। ଏହିପରି ବୈପ୍ଳବିକ ଭାବନାରେ ତାଙ୍କର କବିତା ଗୁଡିକ ସମାଜର ବୈଷମ୍ୟକୁ ପ୍ରକଟିତ କରି ସଂଗ୍ରାମର ଆହ୍ୱାନ ଦେଇଛି-

"ଭୋକ ଉପାସେ ଅର୍ଦ୍ଧପ୍ରାଣ
ଜାଗିଛୁ ଆଜି ସ୍ପର୍ଦ୍ଧମାନ
ବିଦ୍ରୋହର ଲଗ୍ନ ଦେଖୁ
                    ବିପ୍ଳବର ରଥେ
ଛୁଟିବୁ ଆମେ ଅଗ୍ନିଜଳା
                    ରକ୍ତ ଝରାପଥେ"

ଏହି ପ୍ରତ୍ୟୟବାଣୀ କୌଣସି ନିର୍ଦ୍ଦିଷ୍ଟ ଗୋଷ୍ଠୀ ପାଇଁ ଧ୍ରୁବସତ୍ୟ ନୁହେଁ। ଏହା ମାନବ ସମାଜ ପାଇଁ ଅଭିପ୍ରେତ। ସଭାସମିତିରେ ବକ୍ତାଙ୍କ ବାଗାଡ଼ମ୍ବର ବା କ୍ରୀୟାହୀନ ଉଚ୍ଚାରଣ ଏହାନୁହେଁ। ଭୟଭୀତ ଅସହାୟ ମନୁଷ୍ୟ ପାଇଁ ଏହା ଶକ୍ତି ସାମର୍ଥ୍ୟର ସ୍ଫୁଲିଙ୍ଗ। ପ୍ରଳୟ ଓ ପ୍ରେରଣାର ସଂଜୀବନୀ। ସଂଗ୍ରାମ କରିଆରେ ସାମାଜିକ ସ୍ଥିତାବସ୍ଥାର ପରିବର୍ତ୍ତନ ପାଇଁ କବି ନିଜକୁ ମହାଶକ୍ତିମାନ ଅଗ୍ନିଶିଖା ବୋଲି ପରିଚୟ ଦେଇଛନ୍ତି-

ମୁଁ ଯେ ବସୁଧାର ମହାବୁଭୁକ୍ଷା ଅନିର୍ବାପିତ ଶିଖା
ଦିଗ୍‌ବଳୟର ସୀମା ତଳେ ତଳେ ଶେଷପ୍ରଶ୍ନର ଟିକା
ଗୁମ୍ଫାତିମିରେ ଘୂମନ୍ତ ଚିର ଆଲୋକ ପ୍ରସ୍ରବଣ

ପ୍ରାଣର ତରଙ୍ଗ ରଙ୍ଗଭୂମିରେ ଭୂମିକାର ଅବଦାନ
ରାତ୍ରିର ଶେଷେ ଉଷାର ଉଦୟଭାନୁ
ଏକ ଆଶ୍ଚର୍ଯ୍ୟ ମୁଁ
ମୁଁ ତିର୍ଯ୍ୟକ ତ୍ରିଭୁଜର କୋଣ
ବିସ୍ଫୋରକ ମୁଁ ଅଟମ୍‌ର ଭ୍ରୁଣ
ବିଷାକ୍ତ ଆଉ ଜଳନ୍ତ
ବେଗବାନ ମହାଦୁରନ୍ତ
ଦୃଷ୍ଟିରେ ମମ
ସ୍ଫୁଲିଙ୍ଗ ସମ
ଶିଖାଜଳେ ଅବିରାମ
ବିଚଳିତ, ଉଦ୍ଦାମ ।

ଏହାହିଁ ଜଣେ ସଂଗ୍ରାମୀପୁରୁଷର ଉଦାତ୍ତ ଅର୍ଥପୂର୍ଣ୍ଣ ଉଚ୍ଚାରଣ ଯାହାକି ଏକ ପୃଥିବୀ (Third world) ସୃଜିବାକୁ ଶପଥ ନେଇଥିବା ନିଷ୍ପାପର ଆନ୍ତରିକ ଅଭିଳାଷ । ବିପ୍ଳବୀ କବି ଆଶାବାଦୀ ହୋଇ ପୁନଶ୍ଚ ସ୍ୱପ୍ନ ଦେଖିଛନ୍ତି - ଜନତାର ବଜ୍ର ଶପଥ ମଧ୍ୟରେ ଏ ନବୀନ ଇସ୍ତାହାର ଉଦ୍‌ଘୋଷିତ ହେବାଫଳରେ ପୁରାତନ ସତଃ ଆତ୍ମଗୋପନ କରିବାକୁ ବାଧହେବ । ଅରାଜକତାର ଅମା ଅନ୍ଧାର ଲୋପ ହୋଇ ଗୋଲାମୀର ନାଗଫାଶ ମୁକୁଳି ଯିବ ।

କଳା ଦୃଷ୍ଟିରୁ ଏ କବିତା ଗୁଡିକ କେବଳ ପ୍ରୋପାଗଣ୍ଡା ନୁହେଁ ବା ଶବ୍ଦର ବିଭବ ନୁହେଁ ବରଂ ଅତି ଉଚ୍ଚକୋଟୀର କାବ୍ୟ ସନନ୍ଦର ଅଭିନବ ପରିପ୍ରକାଶ । ଖୋଲାଝର୍କାରେ ସଂକଳିତ ବିଭିନ୍ନ କବିତା ମଧ୍ୟରୁ ଅଗ୍ନିଯୁଗ, ନବଦୃଷ୍ଟି, ବିପ୍ଳବୀ ପ୍ରାଣ, ବିପ୍ଳବ ମରିନାହିଁ, ନିଶ୍ଚିତ ତାରିଖ, ଉଜ୍ଜ୍ୱଳ ପତାକା, ନୂତନ ବିଦ୍ୟୁତ, ମୁଁ ଜଣେ ମେହନତି ପ୍ରଭୃତି କବିତା ସମାଜବାଦୀ ଚିନ୍ତାଧାରା ଓ ସ୍ୱାଧୀନତାର ଉନ୍ମାଦନାରେ ପ୍ରାଣବାନ ହେବା ସଙ୍ଗେ ସଙ୍ଗେ ଆଶା ଓ ନିରାଶାର ଦ୍ୱନ୍ଦ ମଧ୍ୟ ସ୍ୱାଭାବିକ ଭାବେ ବହନ କରିଛି । କବି ଆଶାକରିଛନ୍ତି-

ଏ ସମୟ ବଦଳିବ ଜାଣିଚି ମୁଁ
ହାଡ଼ଭଙ୍ଗା ଶୀତର ଏ ମାଘ
ରହିବନି ସବୁଦିନ ପାଇଁ
ମଣିଷର ରକ୍ତଖିଆ ବାଘ
ସେବି ଦିନେ ମରିବଇ
ମୋର ଲାଠି ମାଡ଼େ ।

ପୁନଶ୍ଚ ତାଙ୍କର ଦୃଢ଼ ବିଶ୍ୱାସ ଅଛି-

ଏଇ ପଙ୍ଗପାଳ ଦଳ
କେବେ କେଉଁ ବର୍ଷା ଝଡ଼େ
ହଠାତ୍ ମାତିବେ ଯଦି ଦୀର୍ଘ ପଟୁଆରେ
ଧାନର ବିସ୍ତୀର୍ଣ୍ଣ କ୍ଷେତ, ପୋଡ଼ି ଜାଳି ଭସ୍ମ କରିଦେବେ
ଜାଳିଦେବେ ଅମଲାତନ୍ତ୍ରୀର ନିଷିଦ୍ଧ ପଲାଶ ଗଡ଼

କବିଙ୍କର ସ୍ୱ ସଜ୍ଞା ସକାଳ ସଂଶୟର କାରବାଡ଼କୁ ଲଘି ଯାଇଚି । ତାଙ୍କ ମନରେ ଆତ୍ମ ପ୍ରତ୍ୟୟ ଆସିଛି । ସୀମାହୀନ ସମୁଦ୍ରରେ ପଥଭ୍ରଷ୍ଟ ମଣିଷଙ୍କ ପାଇଁ ତାଙ୍କ କବିତାର ଉଦ୍‌ଭାସିତ ଆଲୋକ ଧ୍ରୁବତାରାପରି ନିଶ୍ଚୟ ରକ୍ଷା କବଚ ହେବ । ତେଣୁ ଟଲଷ୍ଟୟ ଯଥାର୍ଥରେ କହିଛନ୍ତି-

"କବିତା ହେଉଛି ଏକ ଅଗ୍ନି ଯାହା ମନୁଷ୍ୟ ପ୍ରାଣକୁ ପ୍ରଜ୍ଜ୍ୱଳିତ କରେ ।
କବିତା ଏକ ଅଗ୍ନି ଯାହା କଲମ ସଙ୍ଗେ ସଙ୍ଗେ ଅନ୍ୟକୁ ଆଲୋକ ଓ
ଉଷ୍ଣତା ପ୍ରଦାନ କରେ ।"

ଖୋଲାଝର୍କାର ଦୃଶ୍ୟ :

"ପବନର ଝଙ୍କାର ମୋ ପ୍ରେୟସୀ,ଝର୍କାଫାଙ୍କର ତାରା ସବୁ ସନ୍ତାନ ସନ୍ତତି ।"
କାରଖାନାର ଧୂଆଁ ସେପାଖ ମେଘର ପଛେ
ଏବେବି ସଫେଦ ଚନ୍ଦ୍ର ଉଠିଛି ଆହା
ଏବେବି ଜ୍ୟୋତ୍ସ୍ନା ଝରଣାର ନୀଳ ବୁକେ
ପ୍ରୀତି ଚୁମ୍ବନ ଲେଖେ- (କବି ଲକ୍ଷ୍ମୀଧର)

କବି ଲକ୍ଷ୍ମୀଧର ନାୟକଙ୍କ ଶିଳ୍ପଶାଳା ହୃଦୟର ନିଭୃତ କୋଠରୀର ଖୋଲା ଝରକା ଆରପାଖରେ ଫୁଲର ଫସଲ, ପ୍ରଜାପତିର ଆସର, ନିରୋଳା ନଇତୁଠ, ନିଭୃତ ସଞ୍ଜ, ଆଉ ନିଛାଟିଆ ଆକାଶର ତାରା- ସମସ୍ତେ ଦେଇଛନ୍ତି ଉଦାମ ପ୍ରେରଣା । ଜୀବନର ନିର୍ଜନ ପ୍ରାନ୍ତରେ ବୁଲୁ ବୁଲୁ ବୟସକୁ ହଜାଇଥିବା ଏଇପରିଣତବୟସ୍କ କବିଟି ଯେପରି ପ୍ରେମର ମଳୟ ପବନ ପାଇ ପ୍ରଗଳ୍‌ଭ ତରୁଣଟିଏ ହୋଇ ଯାଇଛି-

ମନେହୁଏ ବୟସର ଶେଷେ ହଠାତ୍ ଯୌବନ ପୁଣି ଫେରିଆସି
ସପ୍ନର ଆବେଶେ
ଶିଳ୍ପୀର ରଙ୍ଗୀନ ତୁଳୀ ଧରି
ଆଙ୍କିଦେଲାପରି
ପାହାଡ଼ ପ୍ରାନ୍ତର ନଦୀ ଗଛ ପତ୍ର ଲତା
ପୌଷର ଗୋଧୂଳି ଅବା ବର୍ଷା ଘନଘଟା

ମୋ ମନ କାନ୍‌ଭାସେ ସେଇ
ଲାଲ ଲାଲ ହରିତ୍ ରଙ୍ଗର ଝଲମଲ ଛିଟା

ଫାକ୍ଟେରୀ, ଫର୍ନିସ, ଖଣି ଖାଦାନ ଓ ଖେତରେ ନିତିଦିନ ଜୀବନକୁ ଘଷି ମାଜୁଥିବା ମଣିଷଟିର ମନରେ ଆଦିମ ପ୍ରବୃତ୍ତି ସ୍ନେହ ଶ୍ରଦ୍ଧା ପ୍ରେମ ପ୍ରୀତି ରହିଛି, ସେ ବି ଲୋଡ଼େ ହାଡ଼ଭଙ୍ଗା ପରିଶ୍ରମ ଶେଷରେ ପ୍ରକୃତିର ଚନ୍ଦ୍ରିଲ କାକଳୀ, ଫୁଲଫୁଟା ଉଦ୍ୟାନ ବିହାର। ପ୍ରତି ଯୁଗରେ ପ୍ରତ୍ୟେକ ମଣିଷ ଶ୍ରମ, ସ୍ୱପ୍ନ ଓ ସମ୍ଭୋଗର କୁଞ୍ଜବନରେ ଜୀବନ ବିତେଇ ଦେବାକୁ ଲାଳସୀ। ଏଥିପାଇଁ କବି ଓ ଶ୍ରମଜୀବୀ ସମପରିମାଣରେ ସ୍ୱପ୍ନବିଳାସୀ। ଏହି ସାଧାରଣ ଜିଜ୍ଞାସା କବିର ମୁକ୍ତ କଣ୍ଠରେ-

"ଖାଲି ଜ୍ୟୋସ୍ନା ମଳୟ ନୁହେଁ କି
ବଂଚିବାର ପରିପ୍ରେକ୍ଷୀ
ମେସିନ୍ ବା କଳ ବକଜା ନୁହେଁ
ହସ ଖୁସି ଲୁହ
ସବୁ ଲୋଡ଼ା ସମଭାବେ ଲୋଡ଼ା"

ଯେଉଁମାନେ କେବଳ କହନ୍ତି ପୃଥିବୀଟା ପୋଡ଼ାଭୂଇଁ, ଦରମଲା, ଏଠି କିଛି ନାହିଁ, କେବଳ ଭୋକିଲା ପ୍ରାଣର ପ୍ରେତଛାଇ, କବିଙ୍କ ମତରେ ସେମାନେ ହୁଏତ ଜୀବନବୋଧ ଦୃଷ୍ଟିଭଙ୍ଗୀଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ।

ମିଳନ ବିଚ୍ଛେଦ, ସୁଖ-ଦୁଃଖ ସୀମାର ଦିଗ୍‌ବଳୟ ଧାରେ ଧାରେ କବି ଯାତ୍ରା କରିଛନ୍ତି। ସେଥିପାଇଁ ବୋଧହୁଏ ତାଙ୍କର ଅଦ୍ୱୈତ ଦୃଷ୍ଟି ଜୀବନର ସେଇ ଦ୍ୱୈତ ସତ୍ୟର ଗଭୀରତାକୁ ସମାନଭାବରେ ତଉଲି ପାରିଥିଲା। ସେ ଯେତିକି ସରସ ପ୍ରାୟ ସେତିକି ପରିମାଣରେ ନିରାଶ। ତାଙ୍କର ଲୁହ ଆନନ୍ଦର ଲୁହ ଓ ତାଙ୍କର ଆନନ୍ଦ ଲୁହର ଆନନ୍ଦ। ପରସ୍ପର ବିରୋଧି ଦୁଇଟି ଗଭୀର ଅନୁଭୂତିର ପ୍ରକାଶରେ ତାଙ୍କର ଭାରସାମ୍ୟ ଲକ୍ଷଣୀୟ। ଜୀବନରୁ ସାମୟିକ ତୁଚ୍ଛତା ଓ ଅନିଶ୍ଚିତତାକୁ ଅବହେଳା କରି ବାସ୍ତବ ଜୀବନର ବେଦନାଠାରୁ ସେ ପଳାୟନ କରି ନାହାନ୍ତି। ଆନନ୍ଦ ଓ ଉପଭୋଗ ମଧ୍ୟରେ ଯେ ସାଂସାରିକ ସମସ୍ତ ପ୍ରଶ୍ନର ସମାଧାନ ନିହିତ ତାକୁହିଁ ସେ ଜୀବନର ଚରମ ସତ୍ୟ ବୋଲି ସ୍ୱୀକାର କରିଛନ୍ତି। ଜୀବନ ଗତିଶୀଳ ଏବଂ ଗତିଶୀଳତାହିଁ ଜୀବନର ଏକ ଧର୍ମ, ତେଣୁ ତାର ପ୍ରବହମାନ ମୁହୂର୍ତ୍ତକୁ ଧରି ରଖି ସେ ଗାଇଛନ୍ତି।

ଜୀବନ! ସିଏତ ଏକ ଜଞ୍ଜାଳର ସଂଗ୍ରାମର ସ୍ୱର
ପ୍ରେମ! ସେତ ତୁମ ପୁଷ୍ଟ କର୍ମଠ ଦେହର ଯୌବନ ସୁରା...
ଆଉ ସବୁ ଗୌଣ ତୁଚ୍ଛ! ନିଭୃତିର ନମ୍ର ଅନ୍ତଃପୁର।

ବାସ୍ତବିକ କାବ୍ୟମାନସ ଏକ ମିଶ୍ରିତ ସ୍ୱରର ଉଚ୍ଚାରଣ। ମୁଖ୍ୟତଃ ଏହା ରୋମାଣ୍ଟିକ। ଜଣେ ବିପ୍ଳବୀ କବି ମନରେ ମଧ୍ୟ ସ୍ୱପ୍ନ ଓ ରୂପର ଆକର୍ଷଣ ସ୍ୱାଭାବିକ ଭାବେ ଅସଞ୍ଚିତ ଥାଏ। ଏହା କବିଙ୍କର କାବ୍ୟ ପ୍ରକ୍ରିୟାରେ ସ୍ପଷ୍ଟ। ଶ୍ରୀ ନାୟକ ଏକ ଅଙ୍ଗୀକୃତ କାବ୍ୟ ଶପଥ ଶୁଣାଉ ଶୁଣାଉ ଅଧିକାଂଶ ସମୟରେ ରୋମାଣ୍ଟିକ ପରିଧି ଭିତରେ ଛପି ଯାଇଛନ୍ତି। କବି ନାୟକଙ୍କ କାବ୍ୟ ମାନସ ଯେତିକି ସାମ୍ୟବାଦୀ ସେତିକି ଭାବବାଦୀ। ସାମ୍ୟବାଦର ବସ୍ତୁବାଦୀ ସଙ୍ଗମରେ ସମୟେ ସମୟେ ଏକ ଭାବବାଦୀ କାବ୍ୟଚେତନା ମିଶ୍ରରାଗରଞ୍ଜିତ। ବିପ୍ଳବୀ କବି ବି ପ୍ରଣୟ ଚହେଁ, ସ୍ନେହଶ୍ରଦ୍ଧା ସମତ୍ୱ ଖୋଜେ। କାରଣ ଦେହର କ୍ଷୁଧାକୁ ଇସ୍ପାତର ତୀକ୍ଷ୍ଣ ତରବାରୀ ସଦାସର୍ବଦା କାଟି ପାରେନା। କବି ଲକ୍ଷ୍ମୀଧରଙ୍କ କବିତାରେ ମଣିଷ ମନର ଏଇ ଦ୍ୱୈତ ସତ୍ତା ଚମତ୍କାର ସମନ୍ୱୟ ଲୋଡ଼ିଛି। ଯନ୍ତ୍ରଣାଜ୍ୱାଳାରେ ବିବଶ ଅବଶ ହୋଇଥିବା ତାଙ୍କର କାବ୍ୟ ପୁରୁଷ –

"ସୁଦୂର ଶୂନ୍ୟକୁ ଚହିଁ ଚିତ୍କାର କରି
କହେ...
    ହେ ନକ୍ଷତ୍ର
        ହେ ପୃଥିବୀ
            ପ୍ରେମଦିଅ
        ପ୍ରାଣଦିଅ, ମତେ ଟିକିଏ ସ୍ୱପ୍ନଦିଅ, ଦିଅ ।।'

**ଖୋଲାଝର୍କାର ଦୃଶ୍ୟାନ୍ତର : କାବ୍ୟଚେତନା**

**"Who they will speak for the dumb, the oppressed, and the feeble, if those invested with the power of speech remain silent." Leon Bloy.**

ବନ୍ଦୀଗୃହରେ ଆବଦ୍ଧ କବିଙ୍କଦୃଷ୍ଟି ଦ୍ୱିଧା ପ୍ରସାରିତ। ଗୋଟିଏ ଦିଗରେ ତାଙ୍କର ଆଧୁନିକ ସଭ୍ୟତାସମୃଦ୍ଧ ସହରଜୀବନ, କଂକ୍ରିଟର କୃତ୍ରିମ ଆକର୍ଷଣ। ଅନ୍ୟ ଦିଗରେ ଫୁଲ ଆଉ ଫସଲ ସ୍ୱପ୍ନ। ମାଟି ଆଉ ଆକାଶର ଆହ୍ୱାନ। ତେଣୁ ଏଇ ଦୁଇଟି ବିପରୀତ ଭାବନାର ସମ୍ମିଶ୍ରଣରେ ତାଙ୍କ କାବ୍ୟମାନସର ସୌଧ ନିର୍ମିତ। ତାଙ୍କ କାବ୍ୟମାନସର ଉତ୍ତରଣକୁ ଲକ୍ଷ୍ୟକଲେ ଜଣାଯାଏ, କବି ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ପଥରେ ଅଗ୍ରଣୀ ହୋଇ ଚାଲିଛନ୍ତି। ସେ କେତେବେଳେ ମାନସବାଦୀ, କେତେବେଳେ ସ୍ୱଚ୍ଛନ୍ଦତାବାଦୀ କେତେବେଳେ ଅଭିବ୍ୟକ୍ତିବାଦୀ ବା କେତେବେଳେ ଜୀବନର ବ୍ୟଙ୍ଗକାର ଭାବରେ ପାଠକ ଆଗରେ ଉଭା ହୋଇଛନ୍ତି। ତାଙ୍କର ବୈପ୍ଳବିକ ଚେତନା ସ୍ୱାକ୍ଷରିତ କବିତାରେ କବି ପାବ୍ଲୋନେରୁଦାଙ୍କ ପ୍ରକାଶ ଶୈଳୀ ଲକ୍ଷଣୀୟ। ସମାଜରୁ ସାମନ୍ତବାଦୀ, ଅଭିଜାତ୍ୟପୂର୍ଣ୍ଣ ମନୋଭାବକୁ ବିଦାୟଦେଇ ଜନତାର

ଚିତ୍ର ଉପସ୍ଥାପନ କରିବା ସାଧାରଣ ନିଷ୍ପେଷିତ, ଅତ୍ୟାଚରିତ ଓ ଅବହେଳିତ ଜନସାଧାରଣଙ୍କୁ ସୁବିଧାବାଦୀ ସମାଜପତିମାନଙ୍କ କବଳରୁ ମୁକ୍ତକରି ଏକ ସୁସ୍ଥ ଓ ସମୃଦ୍ଧ ସମାଜ ଗଠନ କରିବା ଏହି କବିଙ୍କ ଲକ୍ଷ୍ୟ ଓ ଆଦର୍ଶ।

ଛଳନାସର୍ବସ୍ୱ ପୃଥିବୀଭିତରେ ସାମାଜିକ ଅଙ୍ଗୀକାରରେ ପ୍ରତିଶ୍ରୁତିବଦ୍ଧ କବି ଲକ୍ଷ୍ମୀଧର ଜଣେ ଏକକ ପଦଯାତ୍ରୀ। ତାଙ୍କ ନିକଟରେ ବିଜ୍ଞାନର ଦାନବୀୟ ଶକ୍ତି। ନୀତି ଆଉ ଆଦର୍ଶର ଫାଙ୍କା ଆୱାଜ, ଧର୍ମ ବିଶ୍ୱାସର କୁସଂସ୍କାର, ରାଜନୀତି ଓ ଅର୍ଥର ସମସ୍ୟା, ଯୁଦ୍ଧୋତ୍ତର ଶୀତଳ ଯୁଦ୍ଧ ତଥା କ୍ଷମତା ଲାଳସା,ଦମ୍ଭ, ଗର୍ବ ଓ ଦୁର୍ନୀତି ସମସ୍ୟା ଅତି ଆଗ୍ନେୟ ଭାବେ ପ୍ରଜ୍ୱଳିତ। ଏଇସ୍ଥିତି ଉପରେ ସୃଷ୍ଟ ମାଇକୋଭସ୍କି, ବୋଦଲେୟାର, ଅଡ଼େନ, ସ୍ପେଣ୍ଡର, ନେରୁଦା ପ୍ରମୁଖ କବିଙ୍କ ରଚନାରେ ବିଦ୍ରୋହର ଉଷ୍ମତା ମଧ୍ୟ ପ୍ରବାହିତ। କୁତ୍ସିତ ସାମାଜିକ ଷଡ଼ଯନ୍ତ୍ର, ରାଜନୈତିକ ଭଣ୍ଡାମୀ ଓ ତା ବିରୁଦ୍ଧରେ ନିଜସ୍ୱ ଯନ୍ତ୍ରଣାର ପ୍ରତିକ୍ରିୟା କବି ଲକ୍ଷ୍ମୀଧରଂକୁ ବିବ୍ରତ କରିଛି ଏବଂ ଏହି ପ୍ରତିକ୍ରିୟା ଅନ୍ତରର ଅନୁମୋଦନ ସହ କବିତାରେ କରିଛି ଆତ୍ମପ୍ରକାଶ।

କବି ନାୟକ ଦେଶ ଓ ଜାତିର ମାନସିକତା ସହ ସାଲିସକରି କାରାଗାରବଦ୍ଧ ରୋମାରୋଲାଁଙ୍କ ପରି ଆତ୍ମ ନିର୍ବାସନର କରୁଣତାକୁ ଆଦରି ନେଇ ମୃତ୍ୟୁକୁ ଅମୃତ ଦୃଷ୍ଟିରେ ହିଁ ଦେଖିଛନ୍ତି। ସେ ଆଧୁନିକ କବିର ନିଃସଂଗତା ରୂପକ ବେଦନା ବୋଧରେ ବା ମାପବୋଧର ତିକ୍ତ ଅନୁଭୂତିରେ ଜର୍ଜରିତ ହୋଇ ସମାଜଠାରୁ ପଳାୟନ କରିନାହାନ୍ତି। ତାଙ୍କ ପୃଥିବୀରେ ନିଜସ୍ୱ ସଂଳାପ ବିକାରଗ୍ରସ୍ତ ସମାଜ, ସଭ୍ୟତା ଓ ମଣିଷକୁ ନେଇ ସଂଗଠିତ। ସଂଦେହ, ଗ୍ଳାନି, ଭୟ ଆଉ ପରଶ୍ରୀ କାତରତାର ବିପରିତ ଦିଗରେ ଥିବା ଭଲ ପାଇବାର ଆଗ୍ରହକୁ ସେ ଚଲାପଥର ପାଥେୟ କରିଛନ୍ତି। ଯେଉଁଠି ସେ ବୌଦ୍ଧିକ ଅନୁଭୂତିର ଶିକାର ସେଠାରେ ତାଙ୍କ କାବ୍ୟପୁରୁଷ ଉଦାର ହୋଇ ଉଠିଛି। ସମାଜ ଓ ସମୟ ସଚେତନ ଏହି ଶିଳ୍ପୀମାନସ ସଂଗ୍ରାମ ପ୍ରବଣ ପୁରୋଦୃଷ୍ଟି, ସମ୍ବେଦନଶୀଳ ହାର୍ଦ୍ଦିକତା ଓ ବଚନଚାତୁରୀ ମାଧମରେ ଅସହାୟ ମାନବର ବ୍ୟଥା ଓ ବେଦନାକୁ ଯଥାର୍ଥ ବିଚାର ନିମିତ୍ତ ଦୁନିଆ ଦରବାରେ ଉପସ୍ଥାପିତ କରିଛନ୍ତି। ନିଷ୍ଠା ଓ ଗଭୀର ମାନବିକତାବୋଧ ହେଉଛି ତାଙ୍କ ସାହିତ୍ୟ ସୃଷ୍ଟିର ପ୍ରାଣବିନ୍ଦୁ।

କବି ଆଙ୍ଗୀକ ପରୀକ୍ଷାପ୍ରତି ଅଧିକ ଦୃଷ୍ଟି ନଦେଇ ଭାବଗତ ଉଚ୍ଛସିତବାର୍ତ୍ତା ପ୍ରକାଶ କରିଛନ୍ତି। ତାଙ୍କ କବିତାରେ ବାସ୍ତବ ଓ ରୋମାଣ୍ଟିକର ସାଲିସ ହେବା ଫଳରେ ସେ ଜଣେ ଦରଦୀ ବିଶ୍ୱପ୍ରାଣ କବିଭାବେ ଆତ୍ମପ୍ରକାଶ କରିଛନ୍ତି। ତାଙ୍କ କବିତାରେ ରୋମାଣ୍ଟିକ କବିର ସପ୍ନ ଓ ଜଣେ ସମାଜ ସ୍ରଷ୍ଟା ମୁଗ୍ଧ ଓ ଜଣେ ସମାଜ ସ୍ରଷ୍ଟା କବିର ଅଙ୍ଗୀକାର ପ୍ରାୟ ଏକାକାର ହୋଇ ଯାଇଛି। ଜଣେ ସଚ୍ଚୋଟ କବିର ବ୍ୟକ୍ତିଗତ ସପ୍ନ ଓ ସମାଜପ୍ରତି ଏପରି ଅଙ୍ଗୀକାର ଲକ୍ଷ୍ୟ କରାଯାଇଥାଏ। କବି ନାୟକଙ୍କ କାବ୍ୟ ସରରେ ଏହି ବୈପ୍ଳବିକ ଭାବଚେତନା

ଆତ୍ମାମଗ୍ନ ରୋମାଣ୍ଟିକ ଭାବନାରାଜିକୁ ଅତିକ୍ରମ କରି ଏକ ବୃହତ୍ତର ସାମାଜିକ ଉପଯୋଗିତାକୁ ଅବଲମ୍ବନ କରି ଗତିଶୀଳ ହୋଇଛି । ତେଣୁ ମନୁଷ୍ୟ ଓ ମନୁଷ୍ୟର ଦୁଃଖ ଯନ୍ତ୍ରଣା ନିର୍ଯ୍ୟାତନା ପାଇଁ କବି ପ୍ରାଣର ଆତ୍ମିକ ସଂଯୋଗର ସେତୁ ତାଙ୍କ କବିତାରେ ଦୃଢ଼ ଓ ଗଭୀରଭାବେ ପ୍ରତିଷ୍ଠିତ । ସମସାମୟିକ ରାଜନୈତିକ ଚେତନାରେ ଯେଉଁଠି କବିତା ତାଙ୍କ ଅଧିକ ଆବେଗ ପ୍ରବଣତା ଦ୍ୱାରା ନିୟନ୍ତ୍ରିତ, ସେଠାରେ ସେ ବ୍ୟଙ୍ଗର ସଫଳ ଅସ୍ତ୍ର ପ୍ରୟୋଗ କରି କବିତାକୁ ପତ୍ରଧର୍ମିତା ଦୋଷରୁ ଦୂରେଇ ନେଇଛନ୍ତି । ସମୀକୁ ଅସାଧାରଠାରୁ ଅଧିକ ତୀକ୍ଷ୍ଣକରି ସମାଜକୁ ଓ ତା'ର ସ୍ୱାର୍ଥଲବ୍‌ଧ ମଣିଷକୁ କ୍ଷତ ବିକ୍ଷତ କରିଛନ୍ତି । ଏଇଠି ସେ ନିର୍ଭିକ ଓ ସତ୍ୟବାକ୍‌ଭାବେ ପୃଥିବୀର ମୁଖାପିନ୍ଧା ମଣିଷକୁ ସତର୍କବାଣୀ ଶୁଣାଇବାକୁ ଆଗେଇ ଆସିଛନ୍ତି । ଇଲିୟଟୀୟ ମୃତ୍ୟୁଗୀତ ବା ରବୀନ୍ଦ୍ରୀୟ ପଳାୟନ ଗୀତିରେ କବି ବିଶ୍ୱାସୀ ନୁହଁନ୍ତି, ସେ ଚାହାନ୍ତି ଏକ ଶୋଷଣ ମୁକ୍ତ ସାମ୍ୟସମାଜ । ଏହି ସାମ୍ୟବାଦୀ ସମାଜର ପରିକଳ୍ପନା ସଂଭବତଃ ଏକ ମାର୍କସୀୟ ଶ୍ରେଣୀଚେତନା ପ୍ରସୂତ; ମାତ୍ର ଏହା କାବ୍ୟପୁରୁଷର ଏକ ମୌଳିକ ଅଭିବ୍ୟକ୍ତି ଏଦେଶ-ଐତିହ୍ୟ-ପରଂପରା ପ୍ରସୂତ ଏକ ସମ୍ବେଦନାତ୍ମକ ମାନବବାଦୀ ଚେତନା ।

ରୋମାଣ୍ଟିକ କବିର ସୌନ୍ଦର୍ଯ୍ୟପିପାସା, ବାସ୍ତବବାଦର ନୂତନ ଧାରଣା କବି ନାୟକଙ୍କୁ ସ୍ୱତନ୍ତ୍ର ଆସନର ଅଧିକାରୀ କରିଛି । ମୁକ୍ତି ଯନ୍ତ୍ରଣାକୁ ନେଇ ସେ ଏକ ମୋହମୁକ୍ତ ଜଗତର ସ୍ୱପ୍ନ ଦେଖିଆସିଛନ୍ତି । ସେଥିପାଇଁ ତାଙ୍କର କାବ୍ୟଭାଷା ଧୀରେ ଧୀରେ ବକ୍ର ବ୍ୟଙ୍ଗାତ୍ମକ ଓ ସ୍ୱଚ୍ଛ ହୋଇଯାଇଛି । ଶବ୍ଦବ୍ୟଞ୍ଜନା ବା ଧ୍ୱନି ଐଶ୍ୱର୍ଯ୍ୟକୁ ବଡ଼ ମନେ କରୁଥିବା ଏଇ କବି ଆଧୁନିକ ପ୍ରୟୋଗବାଦୀ ଭାବନାର ଅଭାବରୁ ସଫଳ କବିତା ଲେଖିପାରି ନାହାନ୍ତି ବୋଲି ଅନେକ ଭ୍ରାନ୍ତଧାରଣା କରିଥାନ୍ତି । ଗତିଶୀଳ ସମାଜ ବିଶ୍ୱାସକୁ ବାଗିପାରୁ ନ ଥିବା କବି କେବେ ସଫଳ ଓ କାଳୋତ୍ତୀର୍ଣ୍ଣ ହୋଇପାରେ ନାହିଁ । ସାର୍ବଜନୀନ ଆବେଦନ ରହିତ କବିତା ବାସ୍ତବିକ ପୋଥିଗତ । ଏହି ଚିନ୍ତାଧାରାକୁ ଅବଲମ୍ବନ କରି କବି ଅତି ନିଷ୍ଠାପରଭାବେ କବିତାରେ ପ୍ରତିଫଳିତ କରିଛନ୍ତି । ପ୍ରଗତି ଓ ବିପ୍ଳବ ପାଇଁ ପରିସ୍ଥିତି ତିଆରି କରିବା ଦିଗରେ କବିତାକୁ ଏକ ଚୈତନିକ ମାଧମ ରୂପେ ଗ୍ରହଣ କରିବାର ସଜ୍ଞାନ ସଚେତନତା ତାଙ୍କ ସୃଷ୍ଟିର ପ୍ରାଣଧର୍ମ । କବି ଶ୍ରୀ ନାୟକଙ୍କ ଭାବଜଗତ ବିଦ୍‌ଗ୍‌ଧ ମାନସିକତାର ଉଦାର ଦୃଷ୍ଟିଭଙ୍ଗୀ ସହିତ ସାମଜର ସଂଗ୍ରାମ, ଶାନ୍ତି ଓ ସହାବସ୍ଥାନକୁ ଯୁଗପତ୍ ସମର୍ଥନ କରିଛି । ଏହି ଭାବରେ ହୃଦୟବାନ ଏଇ କବିଙ୍କର କବିତା କାନ୍‌ଭାସରେ ଥିବା ବହୁଭାବ ବହୁ ରଙ୍ଗକୁ ଅନୁଧ୍ୟାନ କରାଯାଇପାରେ ।

କବି ନାୟକଙ୍କ ନିଜସ୍ୱ ଯେଉଁ ରାଜନୈତିକ ମତବାଦ ରହିଛି ଅନ୍ତତଃ ତାହାଦ୍ୱାରା ସେ କେତେକ ପରିମାଣରେ ପରିଚାଳିତ କିନ୍ତୁ ନିର୍ଦ୍ଦେଶିତ ନୁହଁନ୍ତି । ତେଣୁ ତାଙ୍କୁ ପ୍ରଥମେ କୌଣସି ରାଜନୈତିକ ଦଳର ମୁଖପାତ୍ର ଭାବେ ବିଚାର କରି ତାପରେ ତାଙ୍କ କବିତାର ଗତିବିଧିର

ବିଚାର କରିବା ଅନୁଚିତ। ଆଜିର କୌଣସି କବିଙ୍କୁ ବୁଝିବାକୁ ହେଲେ ତାଙ୍କ କବିତାର ଅୟମାରମ୍ଭ କାଳରୁ ଶେଷ ପର୍ଯ୍ୟନ୍ତ ପୁଙ୍ଖାନୁପୁଙ୍ଖ ଭାବରେ ଅନୁସରଣ କରିବା ଆବଶ୍ୟକ। କବି ନାୟକଙ୍କ କବିତାର ମର୍ମବୋଧ ହୃଦୟଙ୍ଗମ କରିବାକୁ ଗଲେ ପାଠକ ଲେଖକଙ୍କ ଜୀବନର ବିଭିନ୍ନ ଦିଗ, ସାଂପ୍ରତିକ ସମାଜ ସଂସ୍କୃତି ତଥା ବିଭିନ୍ନ ସମସ୍ୟା ସମ୍ପର୍କରେ ସଚେତନ ହେବା ସର୍ବାଦୌ ପ୍ରୟୋଜନ। ଶ୍ରୀ ନାୟକଙ୍କର କବିତାକୁ ସମାଲୋଚନା କରିବା ପୂର୍ବରୁ ପ୍ରତ୍ୟେକ ସାହିତ୍ୟିକ ଓ ସମାଲୋଚକଙ୍କୁ ମନେ ରଖିବାକୁ ହେବ ଯେ କବି ମୁଖ୍ୟତଃ ତିନୋଟି ଯୁଗର ପ୍ରତିନିଧି। ସବୁଜ ଯୁଗରେ ତାଙ୍କ ଅବଦାନ ଅଳ୍ପ ହେଲେ ମଧ ଉଲ୍ଲେଖଯୋଗ୍ୟ (ବିରହିଣୀ)। ତା ପରେ କବି ମାନସିଂହ, ଗଡ଼ନାୟକ ଓ ରାଉତରାଙ୍କ ସହ ଏକ ଯୁଗରେ ଅବଦାନ। ପରେ ଆମ ସହିତ ଏକ ଯୁଗର ଅବଦାନ (ସାଂପ୍ରତିକ)। ନାୟକଙ୍କ ଅଧିକାଂଶ କବିତାର ଶୈଳୀ ଓ ରଚନାକୁ ତିନି ଭାଗରେ ବିଭକ୍ତ କରାଯାଇପାରେ। (୧) ଉପୋଦ୍‌ଘାତ ବା ସାମାନ୍ୟ କଥନ (୨) କବିତାର ତାର୍କିକ ଅଭିବୃଦ୍ଧି (୩) ଆବେଗଭରା ପରି ସମାପ୍ତି। କବି ନାୟକଙ୍କ କବିତାର ଗୋଟିଏ ବୈଚିତ୍ର୍ୟ ହେଉଛି ନୂତନତାର ଆବିର୍ଭାବ। ତେଣୁ ତାଙ୍କ କବିତା ଏପର୍ଯ୍ୟନ୍ତ ବିଭିନ୍ନ ରୂପରେ, ଛନ୍ଦରେ ଓ ଭାବରେ ଆସି ମଧ ପାଠକକୁ ମୁଗ୍ଧ କରି ପାରିଛି।

କବିଙ୍କ କାବ୍ୟ ଭଙ୍ଗୀ ସ୍ପଷ୍ଟ ଓ ସହଜବୋଧ ଉପମା ପରିପାଟୀରେ ପରିପୁଷ୍ଟ। ମନେ ହୁଏ ପ୍ରତ୍ୟେକ ପଂକ୍ତି ଯେପରି ଶକ୍ତିଶାଳୀ ସଂଳାପର ଉଚ୍ଚାରଣ। କବିଙ୍କ ଆତ୍ମକେନ୍ଦ୍ରିକ ଅନୁଭୂତିକୁ ଉପଲବ୍‌ଧ କରିବା ପାଇଁ ସଂଳାପଧର୍ମିତା ଏକ ମାଧ୍ୟମ। ଖୋଲାଝର୍କାର ଅନେକ କବିତାର ନାଟକୀୟ ଉପସ୍ଥାପନା କବିତାର ବକ୍ତବ୍ୟକୁ ସୁନିର୍ଦ୍ଦିଷ୍ଟ ଓ କଳାତ୍ମକଭାବେ ପ୍ରକାଶିତ କରି ପାଠକମାନଙ୍କୁ ବୌଦ୍ଧିକ ଓ ଚିନ୍ତାଶୀଳ ଉଚ୍ଚତାରେ ପହଞ୍ଚାଇ ପାରିଛି। ଖୋଲାଝର୍କା ପଢ଼ିବା ବେଳେ ପାଠକ ଏକ ବୌଦ୍ଧିକ ସ୍ତର ଦେଇ ଗତିକରେ ଓ ସ୍ଥାନେ ସ୍ଥାନେ କାବ୍ୟିକ ଚମତ୍‌କାରିତାରେ ଆତ୍ମବିଭୋର ହୋଇ ଉଠେ। କବିତା ପଢ଼ି ସାରିବାପରେ ପାଠକ ଏକ ଆବେଗ ମୟ ବୃତ୍ତରେ ବୃତ୍ତାୟିତ ହୋଇପଡ଼େ। କବିତାରେ ବ୍ୟବହୃତ ରୂପକଳ୍ପ, ଚିତ୍ରକଳ୍ପ ଓ ପ୍ରତୀକ

(.. କୃଷ୍ଣ ହରା ଗୋପର ଅନ୍ଧାର ପରି ଅଶ୍ରୁର ଉଚ୍ଛ୍ୱାସ
ପଞ୍ଜାବୀ ଯୁଆନ ମୁଣ୍ଡେ ଗୁଡ଼ାଚୁଡ଼ା ଠେକା ପରି
ନୀଳମେଘ ତଳେ ତଳେ ଆଲୁଅର ଧଳା ରୂପଜରି
ଗୋଧୂଳିର ଅସ୍ତରାଗ ତଳେ ଚୂନ କାମ ସାରି
ଦଶମୀର ହଳଦିଆ ଜହ୍ନ ଉଇଁଲା ଆକାଶେ
ବିଞ୍ଚି ଦେଇ ମୁଠା ମୁଠା ଚକିତ ବୈଦୂର୍ଯ୍ୟ

ଉଠୁଛି ଉଠୁଛି ସୂର୍ଯ୍ୟ

ଶୂନ୍ୟତା ଯେପରି ବନ ମୃଗ ପରି ଆଗେ ଆଗେ ଛୁଟେ

ଜବାଓଠୀ ଅପରାହ୍ଣ, ସାଧନାର ସାରେଙ୍ଗୀ, ସ୍ମୃତିର ସୁରଭି, ଚନ୍ଦ୍ରିଲ ବେଦନା ସୁନାର ବସନ୍ତ, ନୀଳ ମୌସୁମୀ ପଲାଶ ଗଡ଼) ପ୍ରଭୃତି ସ୍ୱପ୍ନ ପ୍ରବଣ ମାନସର ପରିଚାୟକ ହେଲେ ମଧ ଏ ସ୍ୱପ୍ନ ପ୍ରବଣ କେବଳ ମାତ୍ର ସ୍ୱପ୍ନ ନୁହେଁ। ଏହା ବସ୍ତୁବାର ସ୍ୱପ୍ନ : ରୁଗ୍ଣ ଆଧୁନିକ ମଣିଷକୁ ସଞ୍ଜୀବିତ କରିବା ପାଇଁ ଏହା ଏକ ନବ-ସ୍ୱୈରବାଦୀ (New Romantic) ଚେତନାରେ ପ୍ରତୀକ। କାବ୍ୟରୂପ ବା ଫର୍ମରେ ଅଧିକ ସାବଲୀଳତା, କାବ୍ୟଭାଷାରେ ଅଧିକ ରୁଚିଶୀଳତା ଓ ଦକ୍ଷତା; ଅନ୍ତଃଛନ୍ଦରେ ସାଙ୍ଗଠନିକ, ଶ୍ରୁତି ମାଧୁର୍ଯ୍ୟ ଆଦି ସବୁ ଦିଗରୁ ଖୋଲାଝର୍କା ଏକ ସାର୍ଥକ ସୃଷ୍ଟି। ଖୋଲାଝର୍କାର ବର୍ଣ୍ଣନା ଧର୍ମୀ ଭାଷା କବିତାର ଭାବ ପ୍ରବୋଧନ(Evocativeness) କ୍ଷମତାକୁ ସମତୁଲ କରିଛି। ଆଙ୍ଗିକ ସୌକୁମାର୍ଯ୍ୟ ଓ ଶାବ୍ଦିକ ସଂପ୍ରସାରଣ ଶୀଳତା (elasticity) ମଧ ଏଥିରେ ରୂପାୟିତ ହୋଇଛି। ଖୋଲାଝର୍କାର ସୁଲଳିତ କାବ୍ୟ ପାରିପାଟୀ, ପ୍ରଗାଢ଼ ଆତ୍ମିକ ବିଶ୍ୱସ୍ତତା ଓ ସରଳ ପ୍ରକାଶ ଭଙ୍ଗୀ ଏହି ଗ୍ରନ୍ଥକୁ ସାର୍ଥକ କରିବା ଦିଗରେ ସବୁ ମତେ ସାହାଯ୍ୟ କରିଛି।

***

# ଲକ୍ଷ୍ମୀଧର ନାୟକ ଓ 'ମୋ ସ୍ୱପ୍ନର ସହର'

ଦେବେନ୍ଦ୍ର ମହାନ୍ତି

ଚଉରିଶହ ପଚସ୍ତରୀ ପୃଷ୍ଠା ବିଶିଷ୍ଟ ଏହି ଉପନ୍ୟାସର ସ୍ରଷ୍ଟା ହେଉଛନ୍ତି ଲକ୍ଷ୍ମୀଧର ନାୟକ। ପାଞ୍ଚବର୍ଷ ତଳେ ସେ ଶେଷ ନିଃଶ୍ୱାସ ତ୍ୟାଗ କରିଛନ୍ତି। ଲକ୍ଷ୍ମୀଧର ବାବୁଙ୍କ ଭଳି ଓଡ଼ିଆ-ପ୍ରାଣ ବ୍ୟକ୍ତି ଓଡ଼ିଶାରେ ବିରଳ। ଏପରିକି ତାଙ୍କ ଜୀବନକାଳ ଭିତରେ ଥିଲେ କି ନାହିଁ ସନ୍ଦେହ-ଜନକ। ତାଙ୍କର ଜନ୍ମସ୍ଥାନ ଖୋର୍ଦ୍ଧା। କିନ୍ତୁ ଯୁବକ ବୟସରୁ ସେ ଜାମସେଦପୁରରେ ରହି ସମଗ୍ର ସିଂହଭୂମ ଜିଲ୍ଲାରେ ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି ତଥା ସେଠାକାର ଓଡ଼ିଆ ଲୋକମାନଙ୍କୁ ଏକଜୁଟ କରି ସିଂହଭୂମ ଅଞ୍ଚଳର ଓଡ଼ିଶା ସହିତ ମିଶ୍ରଣ ପାଇଁ ବହୁ ଉଦ୍ୟମ କରିଛନ୍ତି। ଟାଟା କଂପାନୀର ଚାକିରୀ ଛାଡ଼ି ଜାମସେଦପୁରରେ ଗୋଟାଏ ପ୍ରେସ ପ୍ରତିଷ୍ଠା କରି 'ବିଛିନ୍ନା' ନାମକ ପତ୍ରିକା ପ୍ରକାଶ କରୁଥିଲେ। ଧଳଭୂମ ଠାରୁ ସିଂହଭୂମ ଯାଏ ବୁଲି ବୁଲି ଓଡ଼ିଆମାନଙ୍କୁ ଉପରୋକ୍ତ ଉଦ୍ଦେଶ୍ୟରେ ଏକଜୁଟ କରିବା ପାଇଁ ନିଜର ସମସ୍ତ ସମୟ ବିତାଇ ଦେଉଥିଲେ।

ସେ ନିଜେ କ୍ଷୋଭର ସହିତ କହିଛନ୍ତି, ଜାମସେଦୁପରରେ ଥିବା ଓଡ଼ିଆ ଲୋକମାନେ ତାଙ୍କୁ ଯେ ଭଳି ସାହାଯ୍ୟ ଓ ସହଯୋଗ କରିବା କଥା, ତାହା କଲେ ନାହିଁ। ବିହାର ପୋଲିସର ଅତ୍ୟାଚାର ସହିତ ଓଡ଼ିଆ ଲୋକଙ୍କ ଅସହଯୋଗରେ ଅତିଷ୍ଠ ହୋଇ ୧୯୫୪ ମସିହାରେ ସେ ନିଜର ପ୍ରେସ ସହିତ ରାଉରକେଲା ଚାଲି ଆସିଲେ। ସେତେବେଳେ ରାଉରକେଲାରେ ଏକ ଇସ୍ପାତ କାରଖାନା ପ୍ରତିଷ୍ଠା ହେବା ପାଇଁ ଜମି ଅଧିଗ୍ରହଣ ନୋଟିଫିକେସନ୍ ହୋଇ ସାରିଥାଏ।

ଏହି ପ୍ରେସ୍‌ରୁ ସେ ଦୀପ୍ତି-ସିରିଜ ଉପନ୍ୟାସ ପ୍ରକାଶ କରୁଥିଲେ। ଏହାଛଡ଼ା ଓଡ଼ିଆରେ 'ରାଉରକେଲା ଡାକ' ଏବଂ ଇଂରାଜୀରେ 'ରାଉରକେଲା ପୋଷ୍ଟ' ନାମକ ଦୁଇଟି ସାପ୍ତାହିକ ମଧ ପ୍ରକାଶ କରୁଥିଲେ। ରାଉରକେଲା ଇସ୍ପାତ କାରଖାନା ନିର୍ମାଣ କାଳରେ ନିଯୁକ୍ତି, ଶ୍ରମିକ ଆନ୍ଦୋଳନ, ଉଦ୍‌ବାସ୍ତୁ ସମସ୍ୟା ଇତ୍ୟାଦି ବହୁ ବିଷୟରେ ବହୁ ସମ୍ବାଦ ଓ ଆଲୋଚନା ଉକ୍ତ ପତ୍ରିକାରେ ସ୍ଥାନ ପାଉଥିଲା। ଏହି ସହରର ଇତିହାସ ବହନ କରିଥିବା ସେସବୁ ପ୍ରତିକାର କପିଗୁଡିକ ଆଜି ଦୁଷ୍ପ୍ରାପ୍ୟ।

ଜୀବନ କାଳ ଭିତରେ ଓଡ଼ିଆ ଅସ୍ମିତା, ଓଡ଼ିଆ ସାଭିମାନର ଅଭିବୃଦ୍ଧି ପାଇଁ ସେ ଆନ୍ଦୋଳନ କରିବା ସହିତ ନିରଳସ ସଂଗ୍ରାମ କରିଛନ୍ତି। କିନ୍ତୁ ତାଙ୍କର ସେ ସଂଗ୍ରାମରେ

ନିଷ୍ଠାପର କିଛି ସୈନିକ ସେ ତିଆରି କରିପାରି ନ ଥିଲେ। ତେବେ ମଧ୍ୟ ଏକୁଟିଆ କଲମକୁ ଅସି ଭାବରେ ବ୍ୟବହାର କରି ସଂଗ୍ରାମ କରି ଚାଲିଥିଲେ। ସାହିତ୍ୟର ପ୍ରତ୍ୟେକ ବିଭାଗକୁ ତାଙ୍କର କଲମ ଛୁଇଁଛି। ସାମ୍ବାଦିକତା, ଜର୍ଣ୍ଣାଲିଷ୍ଟିକ ଲିଟେରେଚର ଠାରୁ ସୃଜନାତ୍ମକ ସାହିତ୍ୟ ଯାଏ ତିନୋଟି କବିତା ପୁସ୍ତକ, ତିନୋଟି ନାଟକ, ଦୁଇଟି ପ୍ରବନ୍ଧ ପୁସ୍ତକ, ଗୋଟିଏ ଜୀବନୀ ଗ୍ରନ୍ଥ ତିନୋଟି ଗଳ୍ପ ସଙ୍କଳନ ଏବଂ ଅଠରଗୋଟି ଉପନ୍ୟାସର ଲେଖକ ହେଉଛନ୍ତି ଲକ୍ଷ୍ମୀଧର ବାବୁ। ସେସବୁ ପୁସ୍ତକଗୁଡିକର ଦ୍ୱିତୀୟ ସଂସ୍କରଣ ହୋଇ ନାହିଁ ଏବଂ ସେଗୁଡ଼ିକ ଆଜି ଦୁଷ୍ପ୍ରାପ୍ୟ। ଏହା ସତ୍ତ୍ୱେ ତାଙ୍କର ଅନେକ ଲେଖା ଅପ୍ରକାଶିତ ରହିଥିବାର ଆମେ ଜାଣୁଁ। ବିଭିନ୍ନ କାରଣରୁ ପରିଣତ ବୟସରେ ସେଗୁଡିକୁ ସେ ଛପାଇ ପାରିନାହାନ୍ତି। ତାଙ୍କର ଆତ୍ମଜମାନଙ୍କ ଉଦ୍ୟମରେ ସେସବୁ ପ୍ରକାଶିତ ହେବା ଆବଶ୍ୟକ। ବିଶେଷ କରି ମୁଁ ଅନୁଭବ କରେଁ, ତାଙ୍କର ସର୍ବଶ୍ରେଷ୍ଠ କୃତି। 'ମୋ ସ୍ୱପ୍ନର ସହରର' ପୁନଃମୁଦ୍ରଣ ହେବା ଆବଶ୍ୟକ।

ସେ ଜଣେ ଅତି ଭାବପ୍ରବଣ, ଉଦ୍ଧାମ ଓ କର୍ମତତ୍ପର ମଣିଷ ଥିଲେ। ଜମିଦାର ବଂଶଜ ଓ ସଂପତ୍ତିବାନ ଲୋକ ହୋଇଥିଲେ ମଧ୍ୟ, କିପରି ଏକ ବାଉଳା ଜୀବନ ଯାପନ କରୁଥିଲେ। ଅତି ସରଳ ଓ ନିରାଡମ୍ବର ଥିଲା ତାଙ୍କର ଜୀବନ ଚର୍ଯ୍ୟା। ରାଉରକେଲାରେ ଅବସ୍ଥାନ କାଳରେ ପୁରୁଣା ଷ୍ଟେସନ ରୋଡ଼ରେ ଗୋଟାଏ ଛୋଟ ଖପର ଘରେ ତାଙ୍କର ଛାପାଖାନା ହିନ୍ଦୁସ୍ଥାନ ପ୍ରିଣ୍ଟର୍ସ ଥିଲା। ସେଇଠି ସେ ରୋଷେଇ କରି ଖାଉଥିଲେ ଏବଂ ରହୁଥିଲେ।

'ମୋ ସ୍ୱପ୍ନର ସହର' ଉପନ୍ୟାସ, ପ୍ରତିଷ୍ଠା କାଳରୁ କୋଡିଏ ବର୍ଷ ଯାଏ, ରାଉରକେଲା ସହରର ଇତିହାସ କହିଲେ ଅତ୍ୟୁକ୍ତି ହେବ ନାହିଁ। ଏହି ସହରରେ ଓଡ଼ିଆ ସାହିତ୍ୟର ବିକାଶ ଓ ପ୍ରସାରର ସେ ଥିଲେ ପ୍ରଥମ ସ୍ଥପତି। ୧୯୫୫ରୁ ୬୦ ଭିତରେ, ତାଙ୍କର ସେହି ପ୍ରେସ ଘରଟି ଥିଲା ରାଉରକେଲାର ସାହିତ୍ୟିକମାନଙ୍କର ମିଳନ ପୀଠ। ରଜନୀକାନ୍ତ ଦାସଙ୍କ ଠାରୁ ହରେକୃଷ୍ଣ ଦାସଙ୍କ ଯାଏ, ବହୁ ପ୍ରତିଷ୍ଠିତ ଓ ନୂତନ ଯୁବ ଲେଖକମାନେ ସନ୍ଧ୍ୟାବେଳେ ସେଠାରେ ଏକତ୍ରିତ ହେଉଥିଲେ। ତାଙ୍କର ଉଦ୍ୟମରେ ହିଁ 'କଲଚରାଲ ଏକାଡେମୀ' ପ୍ରତିଷ୍ଠା ହୋଇଥିଲା ଏବଂ ତାଙ୍କର ସଂପାଦନାରେ ପ୍ରଥମେ ତ୍ରୈମାସିକ ସାହିତ୍ୟ ପତ୍ରିକା ଭାବରେ ୧୯୬୨ ମସିହାରେ 'ନବପତ୍ର' ପ୍ରକାଶିତ ହୋଇଥିଲା।

ଏହି ଉପନ୍ୟାସ ମଧ୍ୟ ରାଉରକେଲାରେ ତାଙ୍କର ରହଣିକାଳ ପାଖାପାଖି ତେଇଶ ବର୍ଷର ଆତ୍ମ ଜୀବନୀ। ଏହି ଉପନ୍ୟାସରେ 'ସୁବ୍ରତ' ଚରିତ୍ର ମାଧ୍ୟମରେ ନିଜର ଚିନ୍ତା, ବିଚାର, ଦୁଃଖ, ପାରିପାର୍ଶ୍ୱିକ ସମସ୍ୟା ଏବଂ ଅନୁଭୂତି ବର୍ଣ୍ଣନା କରିଛନ୍ତି। ଛଦ୍ମ ନାମରେ ତତକାଳୀନ

ଅନେକ ଗୁରୁତ୍ୱପୂର୍ଣ୍ଣ ଲୋକଙ୍କ ବିଷୟରେ ପୁସ୍ତକରୁ ଆଭାସ ମିଳେ । ସେମାନେ ହେଲେ ରଜୀନକାନ୍ତ ଦାସ, ହୃଷିକେଶ ରାୟ, ଧନଞ୍ଜୟ ମହାନ୍ତି, ବଟକୃଷ୍ଣ ପଣ୍ଡା, ମହାପାତ୍ର ଯତୀନ୍ଦ୍ର କୁମାର, ଆର.ବି.ପଟ୍ଟନାୟକ ଏବଂ ଆହୁରି ଅନେକ ।

ଏହି ଉପନ୍ୟାସରେ ସେ ଭଳି ସୁଗଠିତ ବିଷୟବସ୍ତୁ କିଛି ନାହିଁ । କିନ୍ତୁ ତତ୍‌କାଳୀନ ବହୁ ଘଟଣା ବିଷୟରେ ଏଥିରୁ ଜଣାପଡ଼େ । ସୁବ୍ରତ ନାମକ ଚରିତ୍ର ରାଉରକେଲା ଏବଂ ଏକ ପ୍ରେସ ପ୍ରତିଷ୍ଠା କରି ସାପ୍ତାହିକ ଖବର କାଗଜ ବାହାର କରିଛି । ସେହି ସବୁ ଖବର ସଂଗ୍ରହ ଏବଂ ପ୍ରକାଶ ମାର୍ଫତ ସେ ବହୁ ଲୋକ ଓ ବହୁ ଘଟଣାର ସଂସ୍ପର୍ଶରେ ଆସିଛି । ନିର୍ମାଣ କାମ ଆରମ୍ଭ ହେବା ପରଠାରୁ ଇସ୍ପାତ କାରଖାନା ପୂରା ଦମ୍‌ରେ ଚାଲୁହେବା (୧୯୬୬) ଭିତରେ ରାଉରକେଲାର ଘଟି ଯାଇଥିବା ବହୁ ବାସ୍ତବ ଘଟଣାର ଚିତ୍ର, ବହୁ ସଂଘର୍ଷ ଓ ସାଂସ୍କୃତିକ ସଙ୍କଟର ଚିତ୍ର ଏହି ଉପନ୍ୟାସରୁ ମିଳିଥାଏ । ଯେପରି ୧୯୬୪ର ସାଂପ୍ରଦାୟିକ ଦଙ୍ଗା, ୧୯୫୫ରେ ଡକ୍ଟର ହରେକୃଷ୍ଣ ମହାତାବଙ୍କ ରାଉରକେଲା ଆସିବା, ଶ୍ରମିକ ସଂଗଠନ ଗଢ଼ା ହେବା ଇତ୍ୟାଦି ଘଟଣାକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମ ହେଲା ଓଡ଼ିଆ ଅସ୍ମିତା, ଓଡ଼ିଆ ସ୍ୱାଭିମାନ ଏବଂ ଅଧିକାର ପାଇଁ ସଂଗ୍ରାମ । ଦ୍ୱିତୀୟଟି ହେଲା ଶିଳ୍ପାୟନ ଫଳରେ ସାଂସ୍କୃତିକ ସଂଘାତ ଓ ପରିବର୍ତ୍ତନ । ଏଗୁଡ଼ିକ ଭିତରେ ରହିଛି ବାସଚ୍ୟୁତ ସମସ୍ୟା, ଶିଳ୍ପ ପ୍ରତିଷ୍ଠା ପାଇଁ ଜଙ୍ଗଲ ଓ ଜଙ୍ଗଲବାସୀଙ୍କ ଜୀବିକାର ଧ୍ୱଂସ ସାଧନ, ଅଣଓଡ଼ିଆ ଲୋକଙ୍କର ଆଧିପତ୍ୟ ବିସ୍ତାର ଏବଂ ସେ ଦିଗରେ ସରକାରୀ କାଳର ନିସ୍ପୃହତା, ଆଦିବାସୀ ସ୍ତ୍ରୀମାନଙ୍କୁ ଶୋଷଣ, ମଦର ପ୍ରସାର,ଇସ୍ପାତ କାରଖାନାରେ ଦୁର୍ନୀତି, ଜର୍ମାନମାନଙ୍କ ପ୍ରତି ଲୋକଙ୍କ ବିରୋଧୀ ମନୋଭାବ ଇତ୍ୟାଦି ।

୧. **ଓଡ଼ିଆ ଅସ୍ମିତା ଓ ନିଯୁକ୍ତି ସମସ୍ୟା** -ପ୍ରଥମରୁ କହିଛି, ଲକ୍ଷ୍ମୀଧର ବାବୁ ବ୍ୟକ୍ତିଗତ ଜୀବନରେ ଥିଲେ ଓଡ଼ିଆ-ପ୍ରାଣ ବ୍ୟକ୍ତି । ଓଡ଼ିଆ ଜାତୀୟତା ପୂର୍ଣ୍ଣମାତ୍ରାରେ ତାଙ୍କର ମନ ଓ ଚିନ୍ତାକୁ ଆବୋରି ଥିଲା । ମୋ ସପ୍ନର ସହର ଉପନ୍ୟାସରେ ଏହି ଚିନ୍ତା ଓ ବିଚାର ପ୍ରାଧାନ୍ୟ ଲାଭ କରିଛି । ସେ କେବଳ ଚାହିଁଥିଲେ ତା' ନୁହେଁ, ୧୯୫୪ଠାରୁ ସେ ବିଭିନ୍ନ ପରିସ୍ଥିତିରେ ଉଦ୍ୟମ କରି ଚାଲିଥିଲେ, ଏହି ନୂଆ କରି ଗଢ଼ି ଉଠୁଥିବା ସହର ଓଡ଼ିଆମାନଙ୍କର ଏକ ସହର ହେଉ । ପ୍ରତ୍ୟେକ କ୍ଷେତ୍ରରେ ଓଡ଼ିଆମାନେ ଆଧିପତ୍ୟ ଏବଂ ପ୍ରଭାବ ବିସ୍ତାର କରନ୍ତୁ । ଓଡ଼ିଶାରେ ପ୍ରଥମ କରି ଗଢ଼ି ଉଠୁଥିବା ଏହି ବିଶାଳ ଶିଳ୍ପସଂସ୍ଥା ଓ ଶିଳ୍ପସହରରେ ଛୋଟ ବଡ଼ ପଦବୀଠାରୁ ମୁଖ୍ୟ ପଦବୀ ଯାଏ ସବୁଥିରେ ଓଡ଼ିଆମାନେ ଅବସ୍ଥାପିତ ହୁଅନ୍ତୁ । ନିଜର ଅସ୍ମିତା ଓ ସ୍ୱାଭିମାନ ପ୍ରତିଷ୍ଠା କରନ୍ତୁ । ଓଡ଼ିଆ ଭାଷା, ସାହିତ୍ୟ ଏବଂ ସଂସ୍କୃତିର ପ୍ଲାବନରେ ଏ ସହର ଉଦ୍‌ବେଳିତ ହେଇଉଠୁ ।

କିନ୍ତ ତାହା ହୋଇ ପାରି ନାହିଁ । ଏହି ସହରରେ ଓଡ଼ିଆ ଲୋକମାନେ ହିଁ ଓଡ଼ିଆ ଲୋକ, ଓଡ଼ିଆ ଭାଷା ଓ ଚଳଣିର ଶତ୍ରୁ ସାଜିଛନ୍ତି । ଓଡ଼ିଶା ସରକାରଙ୍କ ଦୁର୍ନୀତିଗ୍ରସ୍ତ ପ୍ରଶାସନିକ ଅଧିକାରୀମାନେ ପଞ୍ଜାବ, ବିହାର, ବଂଗଳା, କେରଳି ଆଦି ପ୍ରଦେଶର ବ୍ୟବସାୟୀ ଓ ଲୋକଙ୍କ ସହିତ କାରଖାନାରେ ଓଡ଼ିଆ ଲୋକ ଏବଂ ସ୍ଥାନୀୟ ଆଦିବାସୀମାନଙ୍କ ନିଯୁକ୍ତିକୁ କମ୍ କରିବାର ଚକ୍ରାନ୍ତରେ ସହଯୋଗ କରିଛନ୍ତି ।

ଉତ୍ତର ପ୍ରଦେଶର ପ୍ରବୀଣ ଇଞ୍ଜିନିୟର ଜଗମୋହନଙ୍କ ମୁହଁରେ ଲେଖକ କୁହାଉଛନ୍ତି ନିର୍ବୁଦ୍ଧିଆ ବୋଲି କାହିଁକି ଭାବିଛ ଏମାନଙ୍କୁ ? ତମକୁ ଏଠି ଆସି ଇଞ୍ଜିନିୟର ହବାର ସୁଯୋଗ ଦେଇଛନ୍ତି ବୋଲି ? ଉଦାରତା ଗୁଣରେ, ଭାରତର ଅନ୍ୟ ପ୍ରଦେଶର ଲୋକଙ୍କୁ ଏହି ବଡ଼ ବଡ଼ ହାକିମ ହେଇ ସେମାନଙ୍କର ହୁକୁମ ଜାହିର କରିବା ଔଦ୍ଧତ୍ୟକୁ କ୍ଷମା କରିଛନ୍ତି ବୋଲି ଏମାନେ ? (ପୃଷ୍ଠା-୫୭)

ସେ ସମୟରେ କାରଖାନାରେ ଓଡ଼ିଆ ଲୋକଙ୍କୁ ନିଯୁକ୍ତି ନ ଦେବା ପାଇଁ କିପରି ଷଡ଼ଯନ୍ତ୍ର ଚାଲିଥିଲା । ଜଣେ ବଙ୍ଗାଳି ଆଇ.ସି.ଏସ୍. ଅଫିସର ଯିଏ କି କାରଖାନାର ମେନେଜିଂ ଡାଇରେକ୍ଟର ଥିଲେ, ତାଙ୍କର ଏକ ବକ୍ତବ୍ୟରେ ଏ କଥା ସ୍ପଷ୍ଟ ହୋଇ ଉଠେ । ସେ କହୁଛନ୍ତି ଜାଣ, ଆଜି ପର୍ସନାଲ ଅଫିସର ଫୋନରେ କଅଣ କହିଛନ୍ତି ? ଏ ଅର୍ଡର ନ ବଦଳିଲେ, ହି ଇଜ୍ ଅନଡନ୍ । ଓଡ଼ିଶା ସରକାର ସେଠି ଏମପ୍ଲୟମେଣ୍ଟ ଏକ୍ସଚେଞ୍ଜରେ ଲେଫଟନାଣ୍ଟ କାଡରର ଗୋଟାଏ କୋଉ ମିଲିଟାରୀ ମେନକୁ ଆଣି ଥୋଇଛି । ସେ ଜିଦ୍ ଧରି ବସିଚି ରିକ୍ରୁଟମେଣ୍ଟ କି ପ୍ରମୋଶନ କୋଉଥିରେ ଓଡ଼ିଆଙ୍କ ଛଡା କାହାକୁ ଚାନ୍ସ ଦିଆଯିବନି, ନନସେନ୍ସ । ସେ ଜାଣିବା ଉଚିତ ମୁଁ ବ୍ରିଟିଶ ଅମଳର ବଂଗାଳୀ ଆଇ.ସି.ଏସ୍ (ପୃ-୮୭) ।

ଆଜି ମଧ ଟାଟାବାସୀ ଓଡ଼ିଆମାନଙ୍କ ଭିତରେ ଏକତା, ଓଡ଼ିଆ ସ୍ୱାଭିମାନର ଅଭାବ ଏବଂ ସେହି ବ୍ୟକ୍ତିକେନ୍ଦ୍ରିକତା ରହିଛି ବୋଲି ଅନେକ ସମାଜମୁଖୀ ବ୍ୟକ୍ତି ଅଭିଯୋଗ କରନ୍ତି ।

ସେ ସମୟରେ ରାଉରକେଲା ଇସ୍ପାତ କାରଖାନାରେ ଓଡ଼ିଆ ଲୋକଙ୍କୁ ପୂରାଇ ନ ଦେବାର ଚକ୍ରାନ୍ତ ବିଷୟ ଲକ୍ଷ୍ମୀଧର ବାବୁ ଲେଖିଛନ୍ତି ।" ଏହି ବିରୋଧ କାର୍ଯ୍ୟରେ ଯେଉଁ ବ୍ୟକ୍ତି ଖୁବ୍ ଶକ୍ତ ଓ ନିର୍ମମ, ସେ ହିଁ ଖୁବ୍ ଦକ୍ଷ ଜେନେରାଲ ମେନେଜର, ଏହି ଧାରଣା ହେଲା ଦିଲ୍ଲୀରେ ଥିବା ଷ୍ଟିଲ ଅଥରିଟିଙ୍କର X X X ଏ ଧାରଣାକୁ ଚାଲେଞ୍ଜ କରିବାକୁ ଓଡ଼ିଶା ସରକାରଙ୍କର ଶକ୍ତି ନାହିଁ କି ସାହସ ନାହିଁ, ଯେଉଁ ସାହସ ଅଛି ପଶ୍ଚିମବଂଗ ବା ମଧ୍ୟପ୍ରଦେଶ ସରକାରଙ୍କର X X X ରାଉରକେଲା ଷ୍ଟିଲ୍ ପ୍ଲାଣ୍ଟର ଜେନେରାଲ ମେନେଜର । ଚଳେଇଛନ୍ତି ମନମୁଖୀ ଓଡ଼ିଆ ମାରଣ ନୀତି । ନିଯୁକ୍ତି କ୍ଷେତ୍ରରେ ଓଡ଼ିଆମାନଙ୍କ ପ୍ରତି ଅନ୍ୟାୟ ଅବିଚାର ପ୍ରସଙ୍ଗରେ ସାମ୍ବାଦିକମାନଙ୍କର ଆକ୍ରମଣକୁ ହସି ହସି ଉଡ଼େଇ ଦିଅନ୍ତି । କହନ୍ତି : ଓଡ଼ିଶା

ସରକାରଙ୍କ ଏମ୍ପ୍ଲୟମେଣ୍ଟ ଏକ୍ସଚେଞ୍ଜ ଅପାରଗ। ଦକ୍ଷ ଲୋକ ନାହାନ୍ତି ସେଠି ଆମମାନଙ୍କର ଚାହିଦା ମେଣ୍ଟାଇବା ପାଇଁ x x x ଦୁଇ ତିନି ଲକ୍ଷ ଲୋକଙ୍କର ଏହି ଇସ୍ପାତ ସହର ଆଜି ଅଣଓଡ଼ିଆଙ୍କ ଚରାଭୂଇଁ x x x । (ପୃ-୩୨୮)

ଏହିପରି ଭାବରେ ସେ ସମୟରେ କାରଖାନାରେ ନିଯୁକ୍ତି ଠାରୁ ଓଡ଼ିଆ ଭାଷା, ଓଡ଼ିଆ ସଂସ୍କୃତି, ଓଡ଼ିଆ ସ୍ୱାଭିମାନର ପ୍ରତିଷ୍ଠା ପାଇଁ ଯେଉଁ ସଂଘର୍ଷ ହୋଇଛି ଏବଂ ସେହି ସଂଘର୍ଷ କାଳରେ କାରଖାନାରେ ଥିବା କେତେଜଣ ମୁଷ୍ଟିମେୟ ଓଡ଼ିଆ ଅଫିସର, ଓଡ଼ିଆ ସରକାରଙ୍କ କର୍ମଚାରୀ, ରାଜନୀତିକ ନେତାମାନେ ଏହି ସଂଘର୍ଷରେ ଓଡ଼ିଆ ଲୋକଙ୍କୁ ସାହାଯ୍ୟ କରିବା ପରିବର୍ତ୍ତେ, କିପରି ଓଡ଼ିଆ ସ୍ୱାର୍ଥ ବିରୋଧୀ କାମ କରିଛନ୍ତି, ତାହାର ଏକ ମୋଟାମୋଟି ଆଭାସ ଏହି ଉପନ୍ୟାସରେ ରହିଛି।

୧୯୬୪ର ସାଂପ୍ରଦାୟିକ ଦଙ୍ଗା ବେଳେ ଯେଉଁମାନେ ପ୍ରକୃତରେ ଶହ ଶହ ଭିନ୍ନ ଧର୍ମାବଲମ୍ବୀ ଲୋକମାନଙ୍କୁ ହତ୍ୟା କରିଥିଲେ, ସେମାନଙ୍କର କିଛି ହେଲା ନାହିଁ। ଅଥଚ ହଜାର ହଜାର ଓଡ଼ିଆ ଲୋକ ଜେଲ ଗଲେ। ବଡ଼ କ୍ଷୋଭର ସହିତ ଲକ୍ଷ୍ମୀଧର ବାବୁ ଲେଖିଛନ୍ତି," ଓଡ଼ିଆମାନେ ବଦମାସ, ଏଇ ରାୟ ଦେଇଗଲେ (ମୁଖ୍ୟମନ୍ତ୍ରୀ) ପ୍ରଶାସକମାନଙ୍କ ଆଗରେ। ଓଡ଼ିଆମାନେ ଗୁଣ୍ଡା। ଯୋଉ ଜାତିର ଲୋକ ଛୁରିଟାଏ ଧରି ଶିଖିନାହିଁ, ଯୋଉ ଓଡ଼ିଆ ଘରେ ଲାଠିଟାଏ ଦେଖିବା ସ୍ୱପ୍ନ, ସେ ରକ୍ତର ହୋରି ଖେଳିଛି ଏଇ କମ୍ୟୁନାଲ ରାଏଟରେ ? ଇୟେ କୋଉ ଜଜମେଣ୍ଟ ? x x x ଅନ୍ତତଃ ବାହାରେ ଓଡ଼ିଶାର ଲୋକେ ଜାଣନ୍ତୁ। ହଜାର ହଜାର ନିର୍ଦ୍ଦୋଷ, ନିରପରାଧ ଓଡ଼ିଆଙ୍କୁ କିପରି ଦଳି ଚକଟି ପ୍ରାଣାନ୍ତକ କରାଯାଇଛି ପୁଲିସବୁଟ୍ ତଳେ।"

ଲକ୍ଷ୍ମୀଧର ବାବୁ ୧୯୬୪ ହିନ୍ଦୁ ମୁସଲମାନ ଦଙ୍ଗାର ପ୍ରତ୍ୟକ୍ଷ ଦର୍ଶୀ ଥିଲେ। ଓଡ଼ିଆ ଲୋକଙ୍କ ଜାତୀୟ ଚରିତ୍ର ଉପରେ ସେ କ୍ଷୋଭ ପ୍ରକାଶ କରିଛନ୍ତି। ବରଂ ଏତେ ଦିନକେ ଗୋଟାଏ ସୁଯୋଗ ପାଇଲି ମୋ ଜାତି ଭାଇଙ୍କୁ ଚିହ୍ନିବା ପାଇଁ x x x ଆଜି ନିଜ ପ୍ରଦେଶରେ, ଏଇ ସର୍ବ ଭାରତୀୟ ସହରରେ ଓଡ଼ିଆ ଜାତିର ଆତ୍ମଘାତୀ ଚେହେରାଟା ଦେଖି ଯେ ମୁଁ ଖୁବ୍ ପ୍ରକୃତିସ୍ଥ ହୋଇ ଯାଇଛି, ଇଏ ଏକ ବିରାଟ ଉପଲବ୍ଧିର କଥା ମୋ ପାଇଁ। ବାସ୍ତବତାର ଭିତ୍ତି ଭୂମି ଉପରେ ଛିଡ଼ା ହେଇ ବୁଝି ପାରିଚି, ଏ ଜାତିର ଦେଶ ପ୍ରାଣତା ବୋଲି କିଛି ନାହିଁ। କେବଳ ଅତୀତର ସ୍ଥାପତ୍ୟ କଳାକୁ ନେଇ କିଛି ହାମ୍‌ବଡ଼ା ଗର୍ବ ଆଉ ଅହଙ୍କାର। ପୁଣି ସବୁଠାରୁ ଆଶ୍ଚର୍ଯ୍ୟର କଥା ହେଲା, ତା ଜନ୍ମମାଟିରେ ଅନ୍ୟ ପ୍ରଦେଶର ଲୋକେ ଏକଜୁଟ ହୋଇ ରାଜୁତି ବିସ୍ତାର କରି ଚାଲିଥିବେ। ସେ ନିରବ ଦ୍ରଷ୍ଟା ହୋଇ ଛିଡ଼ା ହୋଇଥିବ। ସେମାନଙ୍କ ସଂଗଠିତ ମାରପେଞ୍ଚରୁ ଏ ଜାତି କିଛି ଶିଖିଲା ନାହିଁ। ସେ ପୁଣି ଲେଖିଛନ୍ତି,

ମନ୍ତ୍ରୀମାନେ ମହାଭାରତୀୟ ଉଦାହରଣରେ ଓଡ଼ିଆମାନଙ୍କ ନିଯୁକ୍ତି ପାଇଁ ପଦେ କହିବେ ନି, ଏଠିକା ଓଡ଼ିଆ ନେତାମାନେ ବି କଂପାନୀ ଅଫିସରଙ୍କୁ ତୋଷାମଦ କରିବେ। ଜାତୀୟ ସ୍ୱାର୍ଥ ରଖିବା ଦିଗରେ ଲଢ଼ିବା ପାଇଁ କହିବ କିଏ ? x x x ଅବଶ୍ୟ ଇଞ୍ଜିନିୟର, ଟେକ୍‌ନିଆନ୍, ଯେଉଁମାନେ ଏ ପ୍ରଦେଶରେ ନାହାନ୍ତି ଆସନ୍ତୁ ସେମାନେ ବାହାରୁ। କିନ୍ତୁ କୁଲି ଶ୍ରେଣୀର ଲୋକ, କିରାଣୀ, ଡ୍ରାଇଭର, ହେଲପର, ଯାବତ୍ କାରିଗରୀ ଶ୍ରେଣୀର ଲୋକ, ଯେଉଁମାନେ ଏ ଜିଲ୍ଲାରେ ଆଉ ପ୍ରଦେଶରେ ହଜାର ହଜାର ସଂଖ୍ୟାରେ ବେକାର ହୋଇ ରହିଛନ୍ତି, ସେମାନଙ୍କୁ କାହିଁକି କାମ ଦିଆ ନ ଯିବ ?

ସେ ବେଳର ପରିସ୍ଥିତି ସହିତ ଆଜିର ଅବସ୍ଥାକୁ ତୁଳନା କରନ୍ତୁ। ଆଜି ଇଞ୍ଜିନୟର,ଟେକ୍‌ନିସିଆନ୍ ଠାରୁ ପରିଚାଳକ, ପ୍ରଶାସକ, ସାଧାରଣ ଶ୍ରମିକମାନଙ୍କ ଯାଏ, ହଜାର ହଜାର୍ ବେକାର ଲୋକ ଓଡ଼ିଶାରେ ବସିଛନ୍ତି। ଅଥଚ ରେଲୱେ, ମହାନଦୀ କୋଲ୍‌ଫିଲ୍ଡ ଆଦି ସରକାରୀ ସଂସ୍ଥାଗୁଡିକ ଠାରୁ ନୂଆ ଗଢ଼ି ଉଠୁଥିବା ବହୁ ବଡ଼ ବଡ଼ ଇସ୍ପାତ କାରଖାନାରେ ଓଡ଼ିଆ ଲୋକଙ୍କୁ ନିଯୁକ୍ତି ମିଳୁନାହିଁ। ବାହାର ପ୍ରଦେଶର ଲୋକ ଏ ପ୍ରଦେଶରେ ଚାକିରି କରୁଛନ୍ତି। ଅଥଚ ଆମର ସରକାର, ରାଜନେତା, ବୁଦ୍ଧିଜୀବୀ, କେହି ମୁହଁ ଖୋଲୁ ନାହାନ୍ତି।

**୨. ଶିଳ୍ପ ସଂସ୍କୃତିର ପ୍ରଭାବ :**

ମଣିଷ ମୂଲ୍ୟହୀନ ହୋଇଯାଏ - ଶିଳ୍ପ ସଂସ୍କୃତିର ଏକ ପ୍ରତିକ୍ରିୟା ହେଲା, ସେଠାରେ ମଣିଷ ଗୌଣ ହୋଇଯାଏ। ଶିଳ୍ପପତିମାନଙ୍କ ପାଇଁ ସେମାନଙ୍କ ଲାଭ ଓ ଯନ୍ତ୍ରପାତି ମୁଖ୍ୟ ହୋଇଯାଏ। ମଣିଷ ବ୍ୟକ୍ତି ହିସାବରେ ପରିଚିତ ହୁଏ ନାହିଁ, ହୁଏ ଏକ ନିର୍ଦ୍ଦିଷ୍ଟ ସଂଖ୍ୟା ଦ୍ୱାରା ଏହି ଆଚରଣର ପ୍ରତିକ୍ରିୟାରୁ ଶିଳ୍ପବିପ୍ଳବ ବେଳେ ୟୁରୋପରେ ମାନବବାଦର ସୃଷ୍ଟି। ବୈପ୍ଳବିକ ବୁର୍ଜୁଆ ସଂସ୍କୃତିରେ ମଣିଷ ହିଁ ମୁଖ୍ୟ ଓ ସର୍ବେସର୍ବା, ଭଗବାନ ମଧ ତା' ଠାରୁ ବଡ଼ ନୁହନ୍ତି। ମଣିଷ ହିଁ ସର୍ବଶ୍ରେଷ୍ଠ ପ୍ରାଣୀ। ତାହାର ମଙ୍ଗଳ, ଉନ୍ନତି ଏବଂ ବିକାଶ ହିଁ ମାନବବାଦର ମୂଳକଥା।

ଲକ୍ଷ୍ମୀଧର ବାବୁ ଲେଖିଛନ୍ତି କିପରି କଳକାରଖାନା ମଣିଷକୁ ନ୍ୟୁନ କରି ଦେଉଛି। କାରଖାନା ନିର୍ମାଣ ବେଳେ ଘଟି ଯାଇଥିବା ଅନେକ ଦୁର୍ଘଟଣା ଏବଂ ସେଗୁଡ଼ିକୁ ଚପାଇ ଦେବାର ହୀନ ଚକ୍ରାନ୍ତ ଭିତରୁ ଗୋଟିଏ ଉଦାହରଣ ଦିଆଯାଇପାରେ। ସେ ଲେଖିଛନ୍ତି, ମିଲ୍ ମିଲ୍ ଝରାବାହଲରେ ଦୁର୍ଘଟଣା ଘଟିଛି ଗତ ରାତିରେ। ଗାତ ଭିତରେ ପଶି ଖୋଳୁଥିବା ଅବସ୍ଥାରେ ଉପର ମାଟି ଧସେଇ ପଡ଼ିଚି ଶହେ ଦେଢ଼ ଶହ ଲୋକଙ୍କ ଉପରେ। ଚାଳିଶ, ପଚାଶ ଜଣଙ୍କର ଅବସ୍ଥା ସଂଘାତିକ। ସାତ, ଆଠ ଜଣ ସେଇଠି ମରି ପଡ଼ିଛନ୍ତି। ଆଉ

କେତେଜଣଙ୍କର ପତ୍ତା ମିଳୁନାହିଁ । ରାତାରାତ ମୃତ୍ୟୁର ନେଇ କୂଆଡ଼େ ଫିଙ୍ଗିଦେଇଛି କଣ୍ଟ୍ରାକ୍ଟର ।

**ବର୍ଦ୍ଧିଷ୍ଣୁ ଅର୍ଥ ଲାଳସା-** ଶିଳ୍ପ ସଂସ୍କୃତି, ଉପଭୋକ୍ତାବାଦ ଓ ଅର୍ଥ ଲାଳସା ବଢ଼ାଏ । ଏହା ବ୍ୟକ୍ତି ସର୍ବସ୍ୱ ଚିନ୍ତା ସୃଷ୍ଟି କରେ । କାରଣ ଏହି ଉତ୍ପାଦନ ପ୍ରକ୍ରିୟାରେ କାମ କରିବା ବ୍ୟକ୍ତି କେନ୍ଦ୍ରିକ । ଏହି ବିପ୍ଳବ ଯେତେ ବଢ଼େ ତେତେ ଅଧିକ ମଣିଷ ସୁଖସ୍ୱାଚ୍ଛନ୍ଦ୍ୟ, ଭୋଗ ଲାଳସାର ବଶବର୍ତ୍ତୀ ହୁଏ । ସେଥିପାଇଁ ଯେପରି ହେଉ ଅଧିକରୁ ଅଧିକ ଆୟ କରିବାକୁ ଚାହେଁ । ସେହି ଅର୍ଥରେ ସେ ମଉଜ ମଜଲିସ କରେ, ସୌଖୀନ ଜିନିଷ କିଣେ । ଇସ୍ପାତ କାରଖାନା ତିଆରି ହେବା କାଳରେ ବିଭିନ୍ନ ଠିକାଦାରମାନଙ୍କ ମାର୍ଫତ କୋଟି କୋଟି ଟଙ୍କା ତତ୍କାଳୀନ ରାଉରକେଲାର ବଜାର ଭିତରକୁ ପଶିଲା । ମଦ ଦୋକାନୀ ପ୍ରବୀର ଦାସଙ୍କ ଠାରୁ ପଞ୍ଜାବୀ ଠିକାଦାର ବଲବୀର ସିଂ, ପୁଣି ଆବୁ ମହାପାତ୍ର ଠାରୁ ବିଲିତା ଯାଏ, ସମସ୍ତେ ଟଙ୍କା ପଛରେ ଧାଉଁଛନ୍ତି । ସେହି ଟଙ୍କା ପାଇଁ ନୀତି, ନୈତିକତାକୁ ଜଳାଞ୍ଜଳି ଦେଇଛନ୍ତି । ସ୍ତ୍ରୀ ଲୋକମାନେ ନିଜକୁ ଉପଭୋଗର ସାମଗ୍ରୀରେ ପରିଣତ କରିଦେବାକୁ କୁଣ୍ଠାବୋଧ କରି ନାହାନ୍ତି । ଲକ୍ଷ୍ମୀଧର ବାବୁ ଲେଖିଛନ୍ତି, x x x ସମସ୍ତେ ଏଠି ସପନ ଦେଖୁଛନ୍ତି ରାଉରକେଲାରେ । ମନ୍ତ୍ରୀଙ୍କ ଉପରେ ବଡ଼ ମନ୍ତ୍ରୀ ପ୍ରବୀର ଦାସ । ରାଉରକେଲା ମାଟିରେ ଗୋଡ଼ ଦେଉ ଦେଉ ସପନ ଦେଖିଲେ କୋଟିପତି ହେବାର x x x ଲକ୍ଷ ଲକ୍ଷ କୋଟିରେ ବି ତା'ର ତୃପ୍ତି ନାହିଁ । ସେ ଚାହେଁ ଆହୁରି, ଆହୁରି ହଜାର ହଜାର, ଲକ୍ଷ ଲକ୍ଷ କୋଟି ଟଙ୍କା x x x ଦୁର୍ଗେଶ୍ୱର ବାବୁ ? x x x ସେ ବି ଚିନ୍ତା କଲେ ଇଟା ତିଆରି ହେଲେ ମହଲା ପରେ ମହଲା ଗଢ଼ିବେ ସାତ ତାଲା, ଆଠ ତାଲା, ଶହେ ତାଲା । ଆକାଶ ଛୁଇଁଲା ଯାଏ ଯେତେ ମହଲା ହେଇ ପାରିବ ଘ ଘ ଘ ସପନ ଦେଖୁଛନ୍ତି ଏଠି ଓଡ଼ିଶା ସରକାରଙ୍କ ପ୍ରଶାସକମାନେ, କେମିତି ଦି' ହାତରେ ଖାଲି ନୋଟ ଗଣିବେ । ବାସ୍ତୁହରାଙ୍କ ପାଇଁ ଆସୁଥିବା କୋଟି କୋଟି ଟଙ୍କାକୁ ତୋଷରପାତ କରି x x x ଆଉ ସେ ପାଖରେ ଯେତେ ସବୁ ବଡ଼ ବଡ଼ ଅଫିସର, ଜେନେରାଲ ମେନେଜରଙ୍କ ପର୍ଯ୍ୟନ୍ତ, ସମସ୍ତେ ସ୍ୱପ୍ନ ଦେଖୁଛନ୍ତି କିପରି ଲାଖପତି ହେବେ x x x ।

ଶିଳ୍ପ ସଂସ୍କୃତିର ଯେଉଁ ସଂଘାତ କଥା ଲେଖକ କହିଛନ୍ତି, ତା'ହେଲା, ଆର୍ଥିକ ତାରତମ୍ୟ କଥା । ସେହି ଗୋଟାଏ ସ୍ଥାନରେ ଲକ୍ଷ ଲକ୍ଷ ଟଙ୍କା, ପୋଷାକପତ୍ର, ବିଳାସ-ବ୍ୟସନ, ପ୍ରଚୁର ଖାଦ୍ୟ ଓ ଦାମିକା ପାନୀୟ ଅଥଚ ତାହାରି ପାଖରେ ରହିଛି ଚରମ ଦାରିଦ୍ର୍ୟ । ଖାଇବାକୁ ନାହିଁ, ପିନ୍ଧିବାକୁ ନାହିଁ, ପୁଣି ନିର୍ଯ୍ୟାତନା । ଏହି ପରିସ୍ଥିତିରେ ଫୁଲମଣିମାନେ କରିବେ କଣ ? ସେହି ବିଳାସବ୍ୟସନର ଲୋଭ ଓ ଆକର୍ଷଣୀୟ ତ୍ୟାଗ କିଛି, ସନ୍ତୁ ଭଳି ଜୀବନ ବିତେଇବା

ସମସ୍ତଙ୍କ ପକ୍ଷରେ ସମ୍ଭବ ନୁହେଁ। କ୍ଷୁଧା ଆଗରେ ଯୁଗେ ଯୁଗେ ନୈତିକତା ଓ ଧର୍ମ ହାର ମାନିଛି। ତେଣୁ ସେମାନଙ୍କ ନିକଟରେ ଯେଉଁ ସମ୍ବଳ ରହିଛି, ତାହାରି ବିନିମୟରେ ସେମାନେ ମଧ୍ୟ ରହିଁଛନ୍ତି ସୁଖୀ।

ଏହି ଶିଳ୍ପସଂସ୍କୃତି ଦ୍ୱାରା କେବଳ ଫୁଲମଣିମାନେ ପ୍ରଭାବିତ ହୋଇ ନାହାନ୍ତି, ହୋଇଛନ୍ତି ଯେଉଁମାନେ ଚାକିରି କରୁଛନ୍ତି, ରୋଜଗାର କରୁଛନ୍ତି। ହୁଏତ ଦୁଇବେଳା ଖାଇବା ଓ ପିନ୍ଧିବାରେ ସେମାନଙ୍କର ଅଭାବ ନାହିଁ। କିନ୍ତୁ ଅନ୍ୟମାନଙ୍କୁ ଦେଖି ଲାଳସା ବଢୁଛି। ଅଧିକରୁ ଅଧିକ ଖାଇବା, ଅଧିକରୁ ଅଧିକ ପିନ୍ଧିବା, ଅଧିକରୁ ଅଧିକ ବିଳାସବ୍ୟସନ କରିବା ପାଇଁ ସେଥିପାଇଁ ବିଲିତା ସଂପର୍କ ରଖିଛି ଅନେକ ପୁରୁଷଙ୍କ ସାଙ୍ଗରେ। ଏପରିକି ଜଣେ ଜର୍ମାନ ଲୋକ ସାଙ୍ଗରେ ସଂପର୍କ ରଖି, ଜର୍ମାନୀ ଯାଇ ତାକୁ ବିବାହ କରିବାକୁ ଇଛା କରିଛି। ସେ ବିବାହ ଏବଂ ଯୌନ ଜୀବନ ସଂପର୍କରେ ଯେଉଁ ବକ୍ତବ୍ୟ ଦେଇଛି। ତାହା ପାରଂପରିକ ସଂସ୍କୃତିର ଧ୍ୟାନଧାରଣା ଠାରୁ ପୃଥକ। ଏକ ସଂପୂର୍ଣ୍ଣ ମୁକ୍ତ ଯୌନ ଜୀବନ। ସେ କହୁଛି, ଓଡ଼ିଆ ଉପନ୍ୟାସର ନାୟକ ନାୟିକାମାନେ ବଡ଼ ଲଭ୍‌ସିକ୍। ସେ ଲଭ୍ ପୁଣି ଖାଲି କାନ୍ଦ, ବିରହ, ଦୀର୍ଘଶ୍ୱାସ ଭିତରେ ଆଉଟୁ ପାଉଟୁ। ଆଡ଼ଭେନ୍‌ଚର ନାହିଁ କି ଏକ୍ସିଡେଣ୍ଟ ନାହିଁ। ତରୁଣୀଟି ଭଲପାଏ ଯଦି, କେବଳ ତା'ମନର ତରୁଣଟିକୁ ବିବାହ କରି ତା'ଘରର ବୋହୂ ହେବା ପାଇଁ। କୌଣସି ମହତ୍ତର ଉଦ୍ଦେଶ୍ୟ କଥା ଜୀବନରେ କେବେ କଳ୍ପନା କରି ପାରନ୍ତି ନାହିଁ ଉଭୟ। ମତେ ଭଲ ଲାଗେ ନା ଏ ପ୍ରେମର ଢଙ୍ଗଢାଙ୍ଗ x x x ହିନ୍ଦୁଝିଅ ଆଉ ନିଜ ଭିତରେ ଫରକ କଥା କହୁଛି ବିନିତା ସାମୁଏଲ, "ଲଭର୍ ମତେ ଠକି ଦେଇ ଏଠୁ ପାର୍ ହେଇଯିବ ଆଉ ମୁଁ ଶୂନ୍ୟ ଆକାଶକୁ ଚାହିଁ ତାରା ଗଣୁଥିବି ବସି ବସି ? ମୁଁ କଣ ତୁମ ହିନ୍ଦୁଝିଅ କି ? ପ୍ରେମିକ ପାଇଁ ସର୍ବସ୍ୱ ତ୍ୟାଗ କରି, ସେ ସବୁଦିନେ ସୁଖରେ ରହିବ, ଆଉ ମୁଁ ଅଭିଆଡ଼ି ରହି ତା' ବିରହରେ ଲୁହ ଢାଳି ଢାଳି ପୁହାଇବି ଯୁଗ ଯୁଗ, ଏୟା ଭାବୁଚ ?" x x x

କାଳିନ୍ଦୀ ଚରଣ ପାଣିଗ୍ରାହୀ 'ଆଜିର ମଣିଷ' ଲେଖିଲା ବେଳକୁ ଓଡ଼ିଶାରେ ରାଉରକେଲା ଇସ୍ପାତ କାରଖାନାର ନିର୍ମାଣ ଆରମ୍ଭ ହେବା ସହିତ ଶିଳ୍ପାୟନର ସୂର୍ଯ୍ୟ ଓଡ଼ିଶାରେ ଉଦୟ ହୋଇ ଆସୁ ଥାଆନ୍ତି। କିନ୍ତୁ ଶିଳ୍ପ ସଂସ୍କୃତିର ପ୍ରଭାବ ଶିଳ୍ପାୟନ ବିନା ମଧ୍ୟ ଓଡ଼ିଶାର ସମାଜ ଭିତରକୁ ଯେପରି ଧସେଇ ପଶିବା ଆରମ୍ଭ କରି ଦେଇଥାଏ ତାହାର ବର୍ଣ୍ଣନାରେ କାଳିନ୍ଦୀ ପାଣିଗ୍ରାହୀ ଲେଖିଛନ୍ତି, ଆଉ ସତ୍ୟଜିତ୍ ? ସେ ଅର୍ଥପାଇଁ ପାଗଳ। ଅର୍ଥ, ଅର୍ଥ, ଅର୍ଥ ଶିଶୁର ମୂଲ୍ୟହୀନ ହସ, ଯୁବକର ଶୌର୍ଯ୍ୟ, ବୃଦ୍ଧର ପ୍ରଶାନ୍ତ ଚେତନା-ସବୁ ସେଇ ଅର୍ଥ ଶକ୍ତିର ଅଦୃଶ୍ୟ କାରସାଦି। ସେ ଚାହୁଁଛି ଅର୍ଥ। ଅମାପ ଅର୍ଥ। ସୀମାହୀନ ଅସରନ୍ତି ଯାହାର ପରିମାଣ।

ସତ୍ୟେଜିତ୍ ନିକଟରେ ନ୍ୟାୟ ଅନ୍ୟାୟର ପ୍ରଶ୍ନ ନାହିଁ। କେବଳ ଲାଭ କ୍ଷତିର ସମସ୍ୟା।

**ମଦ ସମସ୍ୟା** - ଫକୀରମୋହନଙ୍କ ଯୁଗରେ ଭାରତବର୍ଷ ବିଶେଷ କରି ଓଡ଼ିଶାରେ ଶିଳ୍ପାୟନ ହୋଇ ନ ଥିଲେ ମଧ୍ୟ, ଇଂରେଜ ଚଳଣି ଓ ସଂସ୍କୃତିର ପ୍ରଭାବ ଆମ ଓଡ଼ିଶାର ସମାଜ ଭିତରକୁ ବନ୍ୟାଜଳ ଭଳି ମାଡ଼ି ଆସୁଥିଲା। ସେସବୁର କୁପରିଣାମର ଆଭାସ ଫକିରୀମୋହନଙ୍କ ଡାକମୁନସୀ, ପେଟେଣ୍ଟ ମେଡିସିନ୍ ଆଦି ଗଳ୍ପରୁ ମିଳେ, ଯଦି ଓ ଓଡ଼ିଶାରେ ସେ ସମୟରେ ଶିଳ୍ପାୟନର ଆଲୋକ ମଧ୍ୟ ପଡ଼ି ନ ଥିଲା।

ମନସ୍ତାତ୍ତ୍ୱିକ ଓ ସମାଜତାତ୍ତ୍ୱିକ କାରଣ ଯାହା ଥାଉ ନା କାହିଁକି, ଶିଳ୍ପ ସଂସ୍କୃତି ମଦ ପିଇବା ଅଭ୍ୟାସକୁ ବଢ଼ାଉଥିବାର ଆମେ ଲକ୍ଷ୍ୟ କରିଛୁ। ଅବଶ୍ୟ ମଦର ପ୍ରସାର ବର୍ତ୍ତମାନ ଭାରତରେ ଗାଁଗହଳିରେ ବ୍ୟାପି ଗଲାଣି। ଦେଶର ଯୁବଶକ୍ତିକୁ ଲକ୍ଷ୍ୟ ଭ୍ରଷ୍ଟ ଏବଂ ଅବଦମିତ କରିବା ପାଇଁ ମଦର ପ୍ରସାରକୁ ଏବେ ରାଜନୀତିକ ଲୋକେ ଅସ୍ତ୍ର ଭଳି ବ୍ୟବହାର କରୁଛନ୍ତି। ତାହା ଭିନ୍ନ କଥା। କିନ୍ତୁ ଶିଳ୍ପ ପରିବେଶରେ ବିଭିନ୍ନ କାରଣରୁ ମଦ ପିଇବା ପ୍ରତି ଆସକ୍ତି ବଢ଼ି ଯାଇଥାଏ।

ନିର୍ମାଣ କାଳରେ ଏବଂ ପରେ ପରେ ମଦର ପ୍ରସାର କିଭଳି ସମାଜ ଜୀବନ ଉପରେ କୁପ୍ରତିକ୍ରିୟା ସୃଷ୍ଟି କରିଥିଲା, ତାହାର ଅନେକ ଦୃଷ୍ଟାନ୍ତ ମୋ ସପ୍ନର ସହରରେ ରହିଛି। ସେହି ସୁଯୋଗ ନେଇ ପ୍ରବୀର ଦାସ ରାଉରକେଲା ଆସି ମଦବିକ୍ରି ଏବଂ ମଦବାର ମାଧ୍ୟମରେ ହିଁ ତାଙ୍କ ପ୍ରଭାବର ପରିଧି ବଢ଼େଇଥିଲେ। ଏପରି ହେଇଛି ଯେ ତାଙ୍କ ବାର୍‌ରେ ଶସ୍ତାରେ ମଦ କୁପନ୍ ବିକ୍ରି ହେଇଛି ଏବଂ ସେହି କୁପନସବୁ କିଣି ଶହ ଶହ ଲୋକ ଶସ୍ତା ମଦ ପିଇଛନ୍ତି। ଫଳରେ ଅନେକ ମରିଛନ୍ତି ମଧ୍ୟ। ଇସ୍ପାତ ସହରରେ 'ରାଉରକେଲା କ୍ଲବ', ଜର୍ମାନ କ୍ଲବ, ବ୍ରାହ୍ମଣୀ କ୍ଲବ, ଆଦି ଇସ୍ପାତ କାରଖାନାର ପଦାଧିକାରୀ, ସରକାରୀ ଅଫିସର, ଠିକାଦାର ଆଦିଙ୍କର ମଦ ପିଇବାର ଗୋଟିଏ ଗୋଟିଏ ପେଣ୍ଠସ୍ଥଳୀ ଥିଲା ବୋଲି ଲକ୍ଷ୍ମୀଧରବାବୁ ଲେଖିଛନ୍ତି। ବ୍ରାହ୍ମଣୀ କ୍ଲବରେ ଓଡ଼ିଶା ସରକାରଙ୍କ ବଡ଼ ବଡ଼ ଅଫିସରମାନଙ୍କୁ ମଦରେ ଆପ୍ୟାୟିତ କଲା ବେଳେ ପ୍ରବୀର ଦାସ କହୁଛନ୍ତି, ନା, ନା, ଧଳା ଘୋଡ଼ା ଦିଅ, ଧଳା ଘୋଡ଼ା। ଏମାନେ ସମସ୍ତେ ଓଡ଼ିଶା ସରକାରଙ୍କ ପ୍ରତାପୀ ଅଫିସର ଗୋଷ୍ଠୀ। ଘୋଡ଼ା ଚଢ଼ନେବାଲା ସମସ୍ତେ। ଦିଅ ହ୍ୱାଇଟ ଲେବେଲ X X X। ଅନ୍ୟ ସ୍ଥାନରେ ଲକ୍ଷ୍ମୀଧର ବାବୁ ପୁଣି କହୁଛନ୍ତି, ଠିକାଦାର ପାଖରେ ରୋଜଗାର। କମାଅ, ଖାଅ, ପିଅ, ଜୁଆଖେଳ। ଷ୍ଟିଲପ୍ଲାଣ୍ଟର ଅଫିସର ଅଫିସରିଆଣୀମାନେ ଜର୍ମାନ୍ ସାହେବ, ମେମ୍‌ଙ୍କ ଗହଣରେ ବ୍ରାହ୍ମଣୀ କ୍ଲବରେ ମଦରେ ଗାଧୋଇ, କକ୍‌ଟେଲ୍, ପାର୍ଟିରେ ନାଚୁଛନ୍ତି। ଡେଲିମାର୍କେଟର ଗ୍ରୀନ୍‌ବାର୍‌ରେ ବଡ଼ ବଡ଼

ବାବୁଭାୟା,କଣ୍ଟ୍ରାକ୍ଟର ମଦ ପିଇ ଢୋଳଉଛନ୍ତି । ବୋତଲ ବୋତଲ ରମ୍, ହୁଇସ୍କି, ଜିନ୍ କିଣି ନେଇ ଘରେ ମୁର୍ଗା କାଟି ମଉଜ କରୁଛନ୍ତି । ବାନ୍ଧବୀ ନେଇ ସିନେମା ଦେଖୁଛନ୍ତି । ରେଜା, କୁଲି, ମେଟ୍, ଯଦି ସେମାନଙ୍କ ଦର୍ମା ଟଙ୍କା, ସିରାଜ, ଗଫୁର ଭାଟିରେ କିଛି ଉଡେଇଲେ ତ ହୁଇଶହ କୋଟି ଟଙ୍କାର ଜର୍ମାନ କୋଲାବୋରେସନ୍‌ରେ ହିନ୍ଦୁସ୍ଥାନର ବେକାର ସମସ୍ୟାକୁ ସମାଧାନ କରିବା ପାଇଁ ହେଉଥିବା ୱାନ ମିଲିଅନ ଟନ ଷ୍ଟିଲ୍-ପ୍ଲାଣ୍ଟର ସାର୍ଥକତା କେଉଁଠି ?

ଶିଳ୍ପ ସଂସ୍କୃତିର ଏହି ଭୋଗବାଦ ପ୍ରବଣତାର ସୁନ୍ଦର ବର୍ଣ୍ଣନା ଦେଇଛନ୍ତି, ଲକ୍ଷ୍ମୀଧର ବାବୁ । ଆଜି ଏହି ଭୋଗବାଦ ଓ ଉପଭୋକ୍ତାବାଦ ସମଗ୍ର ଭାରତବର୍ଷର ସମାଜକୁ ଗ୍ରାସ କରି ସାରିଛି ।

**ଦୁର୍ନୀତି** - ଶିଳ୍ପ ସଂସ୍କୃତି ଯେଉଁ ଭୋଗବାଦ ଓ ଉପଭୋକ୍ତାବାଦ ସୃଷ୍ଟି କରେ, ତାହା ହିଁ ଦୁର୍ନୀତିରେ ବୀଜ ବିକ୍ଷେପ କରାଏ । ଆଜି ଭାରତବର୍ଷର ପ୍ରଶାସନ, ଶିଳ୍ପ, ବ୍ୟବସାୟ ଆଦି ସବୁକିଛି ଦୁର୍ନୀତି ଓ କଳାଟଙ୍କା ଦ୍ୱାରା କବଳିତ। ଲକ୍ଷ ଲକ୍ଷ କୋଟି ଟଙ୍କାର ସମାନ୍ତରାଳ ଅର୍ଥନୀତି ଚାଲିଛି ଦେଶରେ ଏବଂ ତାହା ଜ୍ୟାମିତିକ ପ୍ରୋଗେସନରେ ବଢ଼ିବାରେ ଲାଗିଛି । ତାହାର ମୂଳରେ ରହିଛି ସେହି ସୁଖବାଦ, ଭୋଗବାଦ ଓ ଉପଭୋକ୍ତା ବାଦ । ବ୍ରିଟିଶ ଅମଳ ଅପେକ୍ଷା ଏବେ ଏହା କାହିଁକି ଏତେ ବ୍ୟାପୁଛି, ତାହା ମୂଳରେ ଏହି କାରଣ ରହିଛି ।

ସେ ଯାହା ହେଉ ଇସ୍ପାତ କାରଖାନା ନିର୍ମାଣ ବେଳେ ଏବଂ ପରେ ପରେ ଦୁର୍ନୀତି କିପରି ବ୍ୟାପିଲା, ସେ କଥା ଲକ୍ଷ୍ମୀଧର ବାବୁ ଲେଖିଛନ୍ତି" ପରଚେଜ୍ ଡିପାର୍ଟମେଣ୍ଟର ଛୋଟ କିରାଣୀଟିଏ ବି ଆଜି ଶହ ଶହ, ହଜାର ହଜାର ଉପୁରି ରୋଜଗାର କରୁଛି । ଏଇ ଛାପା ଅର୍ଡର କଲିକତା ପ୍ରେସ୍‌କୁ ଜରୁରୀ ଲେବେଲ ମାରି ପଠେଇ ଦେଇ x x x ତା' ପରେ ଅର୍ଡର ନ ଆସିଲେ, ଏଠି କାମ ଅଟକି ଯାଉଚି, ଏଇ ନଜିର ଦେଖାଇ କଲିକତା ଧାଇଁ ଆପଣଙ୍କ ଅଫିସରମାନେ ଘରର ବନ୍ଧୁବାନ୍ଧବଙ୍କୁ ଦେଖା କରି, ଗ୍ରାଣ୍ଡ ହୋଟେଲରେ ରହି, ଫୁର୍ତ୍ତି କରି କେତେ ଟଙ୍କା ଖର୍ଚ୍ଚ କରନ୍ତି ? x x x "ସମବାୟ ଠିକାଦାରୀ ସଂସ୍ଥାଟିଏ ଗଢ଼ିଲି କିନ୍ତୁ କଂପାନୀର ଇଞ୍ଜିନିୟରମାନେ ଆମକୁ କାମ ଦେବାକୁ ନାରାଜ । କାରଣ ଆମ ଠାରୁ କମିଶନ ପାଇବେ ନାହିଁ । ଦୁର୍ନୀତିର ସାର୍କଲ ଖୁବ୍ ବ୍ୟାପକ ପବ୍ଲିକ ସେକ୍ଟର ଅଣ୍ଡରଟେକ୍ସି ଗୁଡିକରେ, କହିଲା ସେ ଦିନ ବିକ୍ରମ ପଣ୍ଡା ନୂଆ କରି ଗଢ଼ି ଉଠିଥିବା ଏ ସହରକୁ ନେଇ ଯେଉଁ ସ୍ୱପ୍ନ ଦେଖିଥିଲେ ଲକ୍ଷ୍ମୀଧର ବାବୁ ତାହା ହେଲା ନାହିଁ । ସେ ଲେଖିଛନ୍ତି "ନିଆ ଲାଗୁ । ଦୁର୍ନୀତି, ଅନାଚାର, ବ୍ୟଭିଚାରର ଅନେକ ଆବର୍ଜନା ଜମା ହେଲାଣି ଏ ସହରରେ । ନିଆଁ ଲଗେଇ ଜାଳି ପୋଡି ପାଉଁଶ କରି ଦେବାର ବେଳ ଆସିଛି ।"

ଲକ୍ଷ୍ମୀଧର ବାବୁ ଲେଖୁଛନ୍ତି," ଆଜ୍ଞା ଏଇଟା ଇସ୍ପାତ ସହର । ଏଠି ମଣିଷମାନେ ମେସିନ୍ ପରି ଚାଲିବାରେ ଅଭ୍ୟସ୍ତ । ଏଠି ବିଚାର ନାହିଁ କି ବେଦନା ନାଇଁ । ଏଠି ଯାହା ରହିବ, ୨ ୨ ୫)

କରିଯିବ । ଯାହା ଭାବିବ, ତାହା କହିଯିବ । କାହାର ମର୍ଜି ଜଗି, ମନକଥା ଜାଣି, କିଛି କହିବାକୁ ବସିବ ଯଦି, ସେ ସୁଯୋଗ, ସୁବିଧା ଆସିବ ନି କେବେ ହେଲେ । କାରଣ ସମସ୍ତେ ଏଠି ବ୍ୟସ୍ତ ନିଜ ନିଜ ଚିନ୍ତା ଆଉ ଜଞ୍ଜାଳରେ, କାହାକୁ ଅପେକ୍ଷା କରି କିଛି ଶୁଣିବା, ଯା ଆଦୌ ସମ୍ଭବ ନୁହେଁ କାହା ପକ୍ଷରେ ।"

**ଉଦ୍‌ବାସ୍ତୁ ସମସ୍ୟା** - ଆଜି କଳିଙ୍ଗନଗର, ନିୟମଗିରି, କର୍ଲାପାଟ, ମହାନଦୀ କୋଇଲା ଖଣି ଅବା କେନ୍ଦୁଝର, ସୁନ୍ଦରଗଡ଼, ସମ୍ବଲପୁର, ଝାରସୁଗୁଡ଼ା, ଅନୁଗୋଳ, ଢେଙ୍କାନାଳ ଆଦି ଜିଲ୍ଲାଗୁଡ଼ିକରେ ଖଣି ଓ ଶିଳ୍ପ ପାଇଁ ବିସ୍ଥାପିତଙ୍କ ସମସ୍ୟା ଯାହା, ପଚାଶ ବର୍ଷ ତଳେ ରାଉରକେଲା ଇସ୍ପାତ କାରଖାନା ପାଇଁ ଜମି ଅଧିଗ୍ରହଣ ବେଳେ ସେହି ସମସ୍ୟା ହିଁ ଥିଲା । କିଛି ବଦଳି ନାହିଁ ।

ସେତେବେଳେ ସ୍ଥାନୀୟ ଆଦିବାସୀମାନଙ୍କୁ ଠକି କ୍ଷତିପୂରଣ ଟଙ୍କାର ଅର୍ଦ୍ଧେକ ଓଡ଼ିଶା ସରକାରଙ୍କ କର୍ମଚାରୀମାନେ ମାରି ନେଇଥିଲେ । ଉଦ୍‌ବାସ୍ତୁ ଲୋକଙ୍କ ପାଇଁ ବିକଳ୍ପ ଜମି ବା ଘରର ଉପଯୁକ୍ତ ବନ୍ଦୋବସ୍ତ କରାଯାଇ ନ ଥିଲା । ଚାକିରି ଦିଆଯିବାର ପ୍ରତିଶ୍ରୁତି ଦେଇ କିଛି ଲୋକଙ୍କୁ ଚାକିରି ଦିଆଯାଇଥିଲା । ଫଳରେ କେବଳ ସେମାନଙ୍କ ଗୋଷ୍ଠୀ-ଜୀବନ ନୁହେଁ, ସେମାନଙ୍କ ଚଳଣି, ବିଚାର, ମୂଲ୍ୟବୋଧ, ରୀତିନୀତି, ପର୍ବପର୍ବାଣୀ ସବୁଯାକ ଭାଙ୍ଗି ଚୁରମାର ହୋଇଯାଇଥିଲା । ସେମାନଙ୍କ ଜୀବନ-ଜୀବିକା ତ ଯାଇଥିଲା, ପୁଣି ଗଲା ସେମାନଙ୍କ ସଂସ୍କୃତି ଓ ଚଳଣି ।

ଲକ୍ଷ୍ମୀଧର ବାବୁ ଲେଖିଛନ୍ତି, ଅଠାନବେ ଖଣ୍ଡ ଗାଁର ଅଠସ୍ତରୀ ବର୍ଗ ମାଇଲ ଭିତରେ ପାଞ୍ଚ ହଜାର ତିନିଶହ ତେସ୍ତରୀଟି ପରିବାର ଉଚ୍ଛେଦ ହୋଇଗଲେ, ଉଦ୍‌ବାସ୍ତୁ ହୋଇଗଲେ । ସେ ସମୟରେ ବାସଚ୍ୟୁତମାନେ ଯେଉଁ ସଂଘର୍ଷ କରିଥିଲେ ତାହାର ସଙ୍କେତ । 'ମୋ ସପ୍ନର ସହର' ଉପନ୍ୟାସରୁ ମିଳେ ।

'ମୋ ସପ୍ନର ସହର' ଉପନ୍ୟାସରେ ଗଳ୍ପ ମୂଲ୍ୟ ଦୁର୍ବଳ । ଏପରି କି ପ୍ରବୀର ଦାସ, ସୁବ୍ରତ, ଦୁର୍ଗେଶ୍ୱର, ବିଲିତା, ଫୁଲମଣି, ରମଣୀ, ରଞ୍ଜନ, ସଜନୀକାନ୍ତ, ମାଲହୋତ୍ରା ଆଦି ଯେତେ ସବୁ ଚରିତ୍ର ରହିଛି, ସବୁଗୁଡ଼ିକ ବହି ଯାଉଥିବା ନଈର ଗୋଟିଏ ଗୋଟିଏ ଛୋଟ ଢେଉ ସଦୃଶ୍ୟ । ଗଭୀର ଭାବରେ କାହାର ଚରିତ୍ର ଚିତ୍ରଣ ହୋଇ ନାହିଁ । କିନ୍ତୁ ବହୁଗୁଡ଼ିଏ ବିକ୍ଷିପ୍ତ ଐତିହାସିକ ଘଟଣାଗୁଡ଼ିକୁ ଏହିସବୁ ଚରିତ୍ର ମାଧ୍ୟମରେ ଗୁନ୍ଥା ଯାଇ ଏକ ସୁନ୍ଦର ଫୁଲମାଳ ପ୍ରସ୍ତୁତ କରାଯାଇଛି । ଲେଖକଙ୍କ ମୁଖ୍ୟ ଉଦ୍ଦେଶ୍ୟ, ନୂଆ କରି ଗଢ଼ି ଉଠୁଥିବା ରାଉରକେଲା ସହରର ପୃଷ୍ଠ ଭୂମିରେ ରହିଛି ସେସବୁ । ସେ ସମୟର ରାଜନୀତିକ ଭ୍ରଷ୍ଟାଚାର, ଟ୍ରେଡ୍‌ୟୁନିଅନ୍ ଆନ୍ଦୋଳନରେ ସ୍ୱାର୍ଥାନ୍ୱେଷିତା ବିଷୟରେ ଆଭାସ ଏହି ଉପନ୍ୟାସରୁ ମିଳିଥାଏ । (ପୃ୨ ୨ ୦-

ବିକ୍ରମ ପଣ୍ଡା ହୀରାକୁଦରୁ ଆସି ରାଉରକେଲାରେ ଶ୍ରମିକ ୟୁନିଅନ ଗଠନ କରିଛନ୍ତି। ସେ କହୁଛନ୍ତି, "ଶ୍ରମିକ ୟୁନିଅନ୍‌ଟା ହିଁ ମୋର ଅସଲ ଲକ୍ଷ୍ୟ। ୟୁନିଅନ୍ କାର୍ଯ୍ୟକ୍ରମ ହିଁ ମୋର କେରିଆର୍। ଏ ଶ୍ରମିକ ଠିକାଦାରୀ ସଂସ୍ଥାଟା ମୁଁ ଗଢ଼ିଛି, ଏଠିକା ବାସ୍ତୁହରାଙ୍କ ପାଇଁ। ସେଇମାନେ ହିଁ ହେବେ ୟା'ର ପରିଚାଳକ।

'ଆଜିର ମଣିଷ' ଉପନ୍ୟାସରେ କାଳିନ୍ଦୀ ବାବୁ ଏହି ଟ୍ରେଡ୍ ୟୁନିଅନ୍ ଆନ୍ଦୋଳନ ସଂପର୍କରେ ଲେଖିଛନ୍ତି। ଶ୍ରମିକମାନେ ନ୍ୟାଯ୍ୟୋଚିତ ମଜୁରି, କାର୍ଯ୍ୟ ସମୟ, ବାସଗୃହ, ବୋନସ୍ ତଥା ଅନ୍ୟାନ୍ୟ ସୁବିଧା ପାଇଁ ପ୍ରଥମ ପର୍ଯ୍ୟାୟରେ ଅର୍ଥାତ୍ ୧୮୭୫ ମସିହା ବେଳକୁ ବମ୍ବେ, କଲିକତା, ପୁନା ଆଦି ସହରରେ ଯେଉଁ ଆନ୍ଦୋଳନ ଆରମ୍ଭ ହୋଇଥିଲା, ତାହାର ଏକ ଚିତ୍ର ଦେଇଛନ୍ତି 'ଆଜିର ମଣିଷ' ଉପନ୍ୟାସରେ। କାଳିନ୍ଦୀ ବାବୁ ଏହି ଉପନ୍ୟାସରେ ଲେଖିଛନ୍ତି, " ସତ୍ୟଜିତ୍‌ର ଆଖି ଆଗରେ ଫରାସୀ ବିପ୍ଳବର କାଳ୍ପନିକ ଛବି ଭାସି ଯାଇଛି। ପେଟକୁ ଖଣ୍ଡେ ରୁଟି ନ ପାଇ କାଙ୍ଗାଳ ଜନତା ରାଜ ପ୍ରସାଦ ସାମନାରେ ଏମିତି ଦାବୀ କରୁଥିଲେ। ଏଠି ଶ୍ରମିକମାନେ ସେହି ଦାବୀ ଜଣାଉଛନ୍ତି, କୈଫିୟତ ମାଗୁଛନ୍ତି।

ସର୍ବୋପରି 'ମୋ ସପ୍ନର ସହର' ଏକ କାଳ୍ପନିକ ଉପନ୍ୟାସ ନୁହେଁ। ଏହି ସହରର ଗଠନ କାଳରେ ଘଟି ଯାଇଥିବା ଅନେକ ଘଟଣାର ବାସ୍ତବ ଚିତ୍ର। ସେହିପରି ଏଥିରେ ଥିବା ସବୁଯାକ ଚରିତ୍ର ଥିଲେ ଜୀବନ୍ତ ଓ ଏହି ସହରରେ ବସବାସ କରୁଥିଲେ। ଲକ୍ଷ୍ମୀଧର ବାବୁ କେବଳ ସେମାନଙ୍କ ନାମ ବଦଳେଇ ଦେଇଛନ୍ତି।

***

# ଲକ୍ଷ୍ମୀଧର ନାୟକ ଓ ତାଙ୍କ 'ଅଗ୍ନି ଶପଥ'

ଭୂପେନ୍ ମହାପାତ୍ର

ବିଶାଳକାୟ ମୁଦ୍ରିତ ଗ୍ରନ୍ଥସୂଚୀ ଭିତରୁ ମୁଁ ଯେତେବେଳେ ଉପନ୍ୟାସଟିକୁ ଆବିଷ୍କାର କଲି ,ଆଶ୍ଚର୍ଯ୍ୟ ହୋଇଗଲି । ଏଇ ଶିରୋନାମାରେ ଲେଖକଙ୍କର ପୁସ୍ତକଟିଏ ଥିଲା ବୋଲି ମୁଁ ଜାଣି ନ ଥିଲି । ଗ୍ରନ୍ଥାଗାରୀଙ୍କୁ ପଚାରିଲି ଏହି ବହିଟି ମୋତେ ଦେଖେଇ ପାରିବେ ? ସେ ତତକ୍ଷଣାତ୍ ଯାଇ ବହିଟି ମୋତେ ଆଣି ଦେଲେ ।

ଉପନ୍ୟାସ 'ଅଗ୍ନି ଶପଥ', ଲେଖକ ଲକ୍ଷ୍ମୀଧର ନାୟକ । ପୁସ୍ତକଟି ପ୍ରକାଶ ପାଇଛି ୧୯୬୨ ମସିହା ଜାନୁଆରୀ ମାସ ଏବଂ ତାର ମୁଦ୍ରଣ ହୋଇଛି ହିନ୍ଦୁସ୍ଥାନ ପ୍ରିଣ୍ଟର୍ସ, ରାଉରକେଲା ୧ରେ । ଉପନ୍ୟାସଟି କ୍ଷୁଦ୍ର । ମାତ୍ର ୭୨ ପୃଷ୍ଠା ଏବଂ ତାର ମୂଲ୍ୟ ରଖାଯାଇଛି ୭୫ ନ୍: ପ: । ମୋର କୌତୁହଳ ବଢ଼ିଗଲା । ୧୯୬୨ ଓ ହିନ୍ଦୁସ୍ଥାନ ପ୍ରିଣ୍ଟର୍ସ ଅନେକ ଦିଗରୁ ମୋର ବହୁ ସ୍ମୃତି ବିଜଡ଼ିତ । ସେତେବେଳେ ଦୁଇଟି ଛାପାଖାନା ରାଉରକେଲାରେ ଖୁବ ନାଁ କରିଥିଲା । ଗୋଟାଏ କୋଣାର୍କ ପ୍ରିଣ୍ଟର୍ସ ଯାହାର ମାଲିକ ଥିଲେ ଘନଶ୍ୟାମ ନାୟକ ଓ ଅନ୍ୟଟି ହେଲା ହିନ୍ଦୁସ୍ଥାନ ପ୍ରିଣ୍ଟର୍ସ । ତାର ମାଲିକ ବିଶିଷ୍ଟ ଔପନ୍ୟାସିକ ଲକ୍ଷ୍ମୀଧର ନାୟକ । ହିନ୍ଦୁସ୍ଥାନ ପ୍ରିଣ୍ଟର୍ସ ଥିଲା ସେତେବେଳେ ରାଉରକେଲାର ଓଡ଼ିଆ ଭାଷା ଓ ସାହିତ୍ୟର ଏକ୍ସୁତିଶାଳ । ଷ୍ଟିଲ ପ୍ଲାଣ୍ଟ ଓ ଅନ୍ୟତ୍ର ଥିବା କିଛି ଲେଖକ ସେତେବେଳେ ଏଇ ପ୍ରେସରେ ପ୍ରାୟ ବସୁ ଥିଲେ ଏବଂ ଗଳ୍ପ କବିତା ଓ ଉପନ୍ୟାସ ଉପରେ ଆଲୋଚନା କରୁଥିଲେ । ଠିକ ଏଇ ସମୟରେ ମଧ ବିଧିବଦ୍ଧ ଭାବରେ 'କଲଚରାଲ ଏକାଡ଼େମୀ' ଜନ୍ମ ଲାଭ କଲା ଏବଂ ସେଇ ବର୍ଷ ଶେଷ ଭାଗ ଆଡ଼କୁ ଜନ୍ମଲାଭ କଲା ରାଉରକେଲାର ପ୍ରଥମ ମୁଦ୍ରିତ ସାହିତ୍ୟ ପତ୍ରିକା 'ନବପତ୍ର' । କହିବା ବାହୁଲ୍ୟ ଯେ ପତ୍ରିକାର ନାମ କରଣ କରିଥିଲେ ଲକ୍ଷ୍ମୀଧର ନାୟକ ଏବଂ ସେ ହିଁ ଥିଲେ କଲଚରାଲ ଏକାଡ଼େମୀର ପ୍ରଥମ ସଭାପତି ଓ ନବପତ୍ରର ପ୍ରଥମ ସଂପାଦକ । ନବପତ୍ରର ପ୍ରଥମ ସଂଖ୍ୟା ହିନ୍ଦୁସ୍ଥାନ ପ୍ରିଣ୍ଟର୍ସରେ ହିଁ ଛପା ହୋଇଗଲା । କଲଚରାଲ ଏକାଡ଼େମୀର ଅନ୍ୟତମ ପ୍ରତିଷ୍ଠାତା ସଦସ୍ୟ ବିଷ୍ଣୁ ରାଉତରାୟଙ୍କ ଅନୁସାରେ ୧୯୬୨ ଏପ୍ରିଲ ମାସରେ ଲକ୍ଷ୍ମୀଧର ବାବୁଙ୍କ ପ୍ରେସ ବସାଘରେ ମଧାହ୍ନ ଭୋଜନ ସହିତ କଲଚରାଲ ଏକାଡ଼େମୀର ପ୍ରଥମ ଆନୁଷ୍ଠାନିକ ସାଧାରଣ ସଭା ଅନୁଷ୍ଠିତ ହେଲା । ସଂବିଧାନ ଖସଡ଼ା ଅନୁମୋଦନ କ୍ରମେ କାର୍ଯ୍ୟକାରୀ ସମିତି ଗଠନ କରାଗଲା । ଲକ୍ଷ୍ମୀଧର ବାବୁ ହେଲେ ସଭାପତି ଓ 'ନପବତ୍ର'ର ସଂପାଦକ । ମହେଶ୍ୱର ପଣ୍ଡା ଉପସଭାପତି ଓ ରଜନୀବାବୁ ସାଧାରଣ ଶ୍ରମିକ

ସଂପାଦକ ତଥା କୋଷାଧକ୍ଷ।" ପ୍ରକାଶ ଥାଉକି ଏ ସଭାରେ ମୁଁ ମଧ ଯୋଗ ଦେଇଥିଲି। ମୁଁ ୧୯୬୨ ମାର୍ଚ୍ଚ ମାସରେ ଷ୍ଟିଲ୍ ପ୍ଲାଣ୍ଟରେ ଯୋଗ ଦେଇ ବିଷ୍ଣୁ ବାବୁଙ୍କ ମାଧମରେ ପ୍ରତି ସପ୍ତାହରେ ଅନୁଷ୍ଠିତ ସାହିତ୍ୟ ଆସରରେ ଯୋଗ ଦେଉଥିଲି। ବସ୍ତୁତଃ କଲଚରାଲ ଏକାଡ଼େମୀ ସେତେବେଳେ ମୁଖ୍ୟତଃ କେତେଜଣ ଇସ୍ପାତ କାରଖାନାର କର୍ମଚାରୀଙ୍କୁ ନେଇ ଗଠିତ ହୋଇଥିଲା।

ମୁଁ ଏବେ ମୂଳ କଥାକୁ ଆସୁଚି। ମୁଁ ଯେତେବେଳେ ବହିର ପ୍ରଥମ ପୃଷ୍ଠାରେ ଲକ୍ଷ୍ମୀଧର ନାୟକ, ହିନ୍ଦୁସ୍ଥାନ ପ୍ରିଣ୍ଟର୍ସ ଓ ୧୯୬୨ ଦେଖିଦେଲି ମୋର କୌତୁହଳ ବଢ଼ିଗଲା। ଲକ୍ଷ୍ମୀଧର ବାବୁଙ୍କୁ ମୋର 'ଗଳ୍ପଗୁରୁ' ବୋଲି ମୁଁ ବହୁ ପ୍ରବଂଧରେ ଲେଖିଚି। ତାଙ୍କ ଗଳ୍ପ, ପ୍ରବଂଧ, କବିତା, ନାଟକ ଓ ଉପନ୍ୟାସରେ ପ୍ରଗତିଶୀଳତା ମୋତେ ଆକୃଷ୍ଟ କରିଥିଲା। ଆଦ୍ୟ ଯୌବନରେ ଲକ୍ଷ୍ମୀଧର ବାବୁ କେତୋଟି ରୋମାଣ୍ଟିକ ଉପନ୍ୟାସ ଲେଖିଥିଲେ ମଧ୍ୟ ସେ ସବୁ ପ୍ରେମ ଥିଲା ମୂଲ୍ୟବୋଧ ଭିତ୍ତିକ। ସବୁ ଯୌବନରେ ପ୍ରେମ ଏକ ଅଂଧ ଚଉମୁହାଣୀ। ତରଳ ତାରୁଣ୍ୟରେ ତାର ରୂପରେଖ ଆକିଂବାକୁ ଯାଇ ସେ ସମୟର କବିମାନେ ତାଙ୍କ ପୂର୍ବ ସୂରୀମାନଙ୍କୁ ଅନୁସରଣ କରିଛନ୍ତି। ତେଣୁ ଚାଳିଶ ଦଶକ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ଯୋଉ ଧାରା ଥିଲା ତାକୁ ପରବର୍ତ୍ତୀ କାଳରେ ଆଉ କେତେକ ଲେଖକ ବଦଳାଇ ଦେଇଥିଲେ। ଏଇ ବଦଳି ଥିବା ସୁଅ ଭିତରେ ଥିଲେ ସଚ୍ଚି ରାଉତରାୟ, କାଳିନ୍ଦୀ ପାଣିଗ୍ରାହୀ, ଭଗବତୀ ପାଣିଗ୍ରାହୀ ଗୋଦାବରୀଶ ମହାପାତ୍ର, ମନୋଜ ଦାସ, ଅନନ୍ତ ପଟ୍ଟନାୟକ, ମନମୋହନ ମିଶ୍ର, ରବି ସିଂ ଏବଂ ଆହୁରି ଅନେକ। ଲକ୍ଷ୍ମୀଧର ନାୟକଙ୍କୁ ଏହି ଦଳରେ ଧରାଯାଉ ନ ଥିଲେ ମଧ ଏହି କବି ଓ ଲେଖକମାନଙ୍କ ସହିତ ତାଙ୍କର ଘନିଷ୍ଠ ସଂପର୍କ ଥିଲା ଏବଂ ନବପତ୍ରରେ ପ୍ରଥମ କେତେ ବର୍ଷ ଏହି ଲେଖକମାନଙ୍କ ଲେଖା (ଭଗବତୀଙ୍କ ବ୍ୟତୀତ) ନିୟମିତ ପ୍ରକାଶ ପାଉଥିଲା। ଏହି ଲେଖକମାନଙ୍କ ସହିତ ବିଷ୍ଣୁ ରାଉତରାୟ, ହରେକୃଷ୍ଣ ଦାସ ଏବଂ ମୋର କେତୋଟି ଗଳ୍ପ ନବପତ୍ରରେ ଦେଖିଲେ ଆମ ପ୍ରାଣ ଉଲ୍ଲସିତ ହେଉ ଉଠୁଥିଲା। ଏଇଠି ଆମ ଲେଖା ଗୋଟିଏ ରାସ୍ତା ଧରିବାକୁ ଆରମ୍ଭ କଲା। ଆମ ସହିତ ମଧ ଥିଲେ ବାଣୀପଦ ଦାଶ, ବିଶ୍ୱନାଥ ବଳ, କୃଷ୍ଣ ମିଶ୍ର, ବ୍ରଜ ପ୍ରଧାନ ଏବଂ ସର୍ବୋପରି ବିଶିଷ୍ଟ ଲେଖକ, ସାମ୍ବାଦିକ, ସ୍ୱାଧୀନତା ସଂଗ୍ରାମୀ ରଜନୀକାନ୍ତ ଦାସ ଓ ବଂଶୀଧର ମହାପାତ୍ର।

୧୯୪୭ରେ ଲକ୍ଷ୍ମୀଧର ବାବୁଙ୍କ ଦ୍ୱାଦଶ ଉପନ୍ୟାସ 'ସର୍ବହରା' ପ୍ରକାଶ ପାଏ। ତା ପୂର୍ବରୁ 'ଉଦ୍‌ଭ୍ରାନ୍ତ' (୧୯୩୪), 'ଭୁଲିଲ ସତେ ସଖି' (୧୯୩୪), 'ଅପୂର୍ବ ପ୍ରେମ' (୧୯୪୦) (ପ୍ରଭୃତି ପ୍ରକାଶ ପାଇଥିଲା। ଏ ସବୁର ପ୍ରଧାନ ଉପଜୀବ୍ୟ ଥିଲା ପ୍ରେମ ଓ

ପ୍ରତାରଣା । କିନ୍ତୁ 'ସର୍ବହରା' ପ୍ରକାଶ ପାଇଲା ପରେ ତାଙ୍କୁ ସମସ୍ତେ ସର୍ବହରାଇ ଲେଖକ ବୋଲି କହିଲେ । ସେତେବେଳକୁ ତାଙ୍କ ନାଟକ ଧର୍ମପତ୍ନୀ (୧୯୪୦), ଜମିଦାର (୧୯୪୨) ଏବଂ ଲାଲ ଚାବୁକ (୧୯୪୨) ପ୍ରକାଶ ପାଇ ଓଡ଼ିଶାରେ ଚହଳ ସୃଷ୍ଟି କରିଥାଏ । 'ଅଗ୍ନି ଶପଥ' ୧୯୬୨ ଜାନୁଆରୀରେ ପ୍ରକାଶ ପାଇଥିଲେ ମଧ୍ୟ ତାର ବିଷୟ ବସ୍ତୁରୁ ଜଣା ପଡ଼େ ତାହା ୫୦ ଦଶକର ପ୍ରଥମ ଭାଗରେ ଲିଖିତ । 'ଅଣା' ଓ 'ନୂଆ ପଇସା' ପ୍ରଭୃତି ଶବ୍ଦର ବ୍ୟବହାରରୁ ତାହା ଅନୁମିତ ହୁଏ । ଉପନ୍ୟାସର କଥାବସ୍ତୁ, ଶ୍ରମିକ ଅଶାନ୍ତି, ମିଲମାଲିକଙ୍କ ଶ୍ରମିକଙ୍କ ଉପରେ ଅତ୍ୟାଚାର, ପୋଲିସ ଜୁଲମ ଇତ୍ୟାଦି । ଉପନ୍ୟାସର ନାୟକ ଜଣେ ସାମ୍ୟବାଦୀ ନେତା । ସେ ସାମ୍ୟବାଦରେ ବିଶ୍ୱାସ କରୁଥିବାରୁ ଅନ୍ୟଠି ମଧ୍ୟ ସମଗୋତ୍ରୀୟ ଲୋକଙ୍କ ସହିତ ସମ୍ପର୍କ ସ୍ଥାପନ କରେ । ତା'ରି ଭିତରେ ମଧ୍ୟ ଥାଏ ପ୍ରେମ ଓ ବିଶ୍ୱାସ ଘାତକତା । କିନ୍ତୁ ନାୟକ ତା ପଥରୁ ବିଚ୍ୟୁତ ହୁଏ ନାହିଁ, ପ୍ରତାରଣା ସତ୍ତ୍ୱେ ।

ପଚାଶ ଦଶକରେ ଏ ସବୁ ସାହିତ୍ୟରେ ନୂଆ ନୁହେଁ । ତାର ଅନେକ ଆଗରୁ ଭଗବତୀ ପାଣିଗ୍ରାହୀଙ୍କ ନେତୃତ୍ୱରେ ଓଡ଼ିଶା ପ୍ରଗତିଶୀଳ ଲେଖକ ସଂଘ (୧୯୩୫) ଗଠିତ ହୋଇ ସାରିଥାଏ । ଏବଂ ତାହା ମଧ୍ୟ ଥିଲା ସର୍ବ ଭାରତୀୟ ସ୍ତରରେ ଗଠିତ ପ୍ରଗତିଶୀଳ ଲେଖକ ସଂଘର ଢାଞ୍ଚାରେ, ଯାହାର ସଭାପତି ଥିଲେ ପ୍ରେମଚନ୍ଦ । ଲକ୍ଷ୍ମୀଧର ବାବୁ ସାମ୍ୟବାଦୀ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇଥିବା ସାଭାବିକ । କିନ୍ତୁ ଏହା ଏକ ଭିନ୍ନ ପ୍ରଶ୍ନ । ଯେଉଁମାନେ ଲକ୍ଷ୍ମୀଧର ବାବୁଙ୍କୁ ଜାଣନ୍ତି ସେମାନେ ନିଶ୍ଚୟ ଜାଣିଥିବେ ଯେ ସେ ରାଉରକେଲା ଆସିବା ପୂର୍ବରୁ ଟାଟା କମ୍ପାନୀରେ ଚାକିରି କରୁଥିଲେ ଏବଂ ସେଠାକାର ଶ୍ରମିକ ଆନ୍ଦୋଳନ ସହିତ ମଧ୍ୟ ସଂପୃକ୍ତ ଥିଲେ । ଶ୍ରମିକ ଆନ୍ଦୋଳନ ବେଳେ ସେ ସାହିତ୍ୟିକ କାର୍ଯ୍ୟକ୍ରମ ମଧ୍ୟ ହାତକୁ ନେଇଥିଲେ । 'ସିଂହଭୂମି ଓଡ଼ିଆ ସାହିତ୍ୟ ସମାଜ'କୁ ସେ ୧୯୩୪ରେ ପ୍ରତିଷ୍ଠା କରିଥିଲେ ଓ ତାର ପ୍ରତିଷ୍ଠାତା ସଭାପତି ମଧ୍ୟ ଥିଲେ । ୧୯୮୪ରେ ତାର ସୁବର୍ଣ୍ଣ ଜୟନ୍ତୀ ମଧ୍ୟ କଟକରେ ପାଳିତ ହୋଇଥିଲା । ବିଚ୍ଛିନ୍ନାଞ୍ଚଳରେ ସେ ଦୀର୍ଘ ପଚାଶ ବର୍ଷ ଧରି ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ପ୍ରଚାର କରିଥିଲେ । ଯଦିଓ ଜାମସେଦପୁରରେ ଟାଟା କମ୍ପାନୀ ଓ ପୋଲିସର ଅତ୍ୟାଚାର ସହି ନ ପାରି ସେ ଓଡ଼ିଶାକୁ ପଳେଇ ଆସିଥିଲେ । ତେଣୁ ଲକ୍ଷ୍ମୀଧର ବାବୁ ନିଜେ ଥିଲେ ଜଣେ ସଂଗ୍ରାମୀ ସୈନିକ ଓ ତାଙ୍କର ନାୟକ ମଧ୍ୟ । ଉପନ୍ୟାସ 'ଅଗ୍ନି ଶପଥ' ତାଙ୍କ ଅଭିଜ୍ଞତାରୁ ଜନ୍ମ ନେଇଥିବ । ଏଥିରେ କଳ୍ପନା ଓ କଳାତ୍ମକତା ଯାହା ଅଛି ସେ ସବୁ ତାଙ୍କ ନିଜସ୍ୱ । ଏ ଦୃଷ୍ଟିରୁ ବିଚାର କରିବାକୁ ଗଲେ 'ଅଗ୍ନି ଶପଥ' ହିଁ ନୂଆ ଶିଳ୍ପ ସହର ରାଉରକେଲାର ପ୍ରଥମ ଉପନ୍ୟାସ ଯାହା ଶ୍ରେଣୀ ସଂଘର୍ଷ, ଶ୍ରମିକ ଆନ୍ଦୋଳନ ଓ ସମାଜବାଦର କଥା କୁହେ ।

ଗୋଟିଏ ସାକ୍ଷାତକାରରେ ଲକ୍ଷ୍ମୀଧର ବାବୁ କହିଥିଲେ, "ମୁଁ ବାସ୍ତବଧର୍ମୀ । ଗାନ୍ଧୀଙ୍କୁ ପଢ଼ି ସତ୍ୟ ଅହିଂସା ଓ ସାଧୀନତା ଏସବୁ ସମ୍ପର୍କରେ ଭାବିବାକୁ ବସିଲା ବେଳେ, ମାର୍କସ ପଢ଼ି ମାନବବାଦୀ ହେବାକୁ ଅନୁପ୍ରାଣିତ ହେଇଚି । ଫଳରେ ସମାଜର ବାସ୍ତବଚିତ୍ର ଦେବାକୁ ଯାଇ, ନିଃସ୍ୱ, ନିରନ୍ନ, ନିଗୃହୀତର ଦୁଃଖ ଦୁର୍ଦ୍ଦଶାକୁ ମୋ ଲେଖାରେ ଯେପରି ବିବୃତ କରିଚି, ସେହିପରି-ସମାଜର ଏକ ସୁବିଧାବାଦୀ ଶ୍ରେଣୀ, ମନୋପଲିଷ୍ଟ ଗ୍ରୁପ, ଦୁର୍ବଳ ଶ୍ରେଣୀକୁ ଲୁଣ୍ଠନ କରିବାକୁ ଯୋଉ ଚକ୍ରାନ୍ତ ଚଳେଇଚି, ତାର ବାସ୍ତବ ଚିତ୍ର ମଧ ଦେଇଚି ମୋ କବିତା, ଗଳ୍ପ, ଉପନ୍ୟାସ ଓ ନାଟକରେ । ଏ ସବୁ ଭିତରେ ରହିଚି ଶୋଷଣ ଆଉ ଅତ୍ୟାଚାର ବିରୁଦ୍ଧରେ ବିଦ୍ରୋହ ଆଉ ବିପ୍ଳବର ସ୍ୱର । ଏପରିକି ମୋ ରୋମାଣ୍ଟିକ ଲେଖାର ଛତ୍ରେ ଛତ୍ରେ ବି ନାୟକ ନାୟିକାଙ୍କ ମିଳାମିଶା କେବଳ ଦେହ ସମ୍ଭୋଗ ସର୍ବସ୍ୱ ଭାବ ବିଳାସ ନୁହେଁ ବରଂ ସେମାନଙ୍କ ନିଭୃତ ସଂଳାପରେ ରହିଚି ଦେଶାତ୍ମବୋଧ, ଜାତୀୟତା ବୋଧ ଏବଂ ସତ୍ୟାନୁସଂଧାନୀ ସୁଖ ସମୃଦ୍ଧ ସମାଜ ପ୍ରତିଷ୍ଠା ପାଇଁ ଏକ ଅଭିଯାନର ନିର୍ଭୀକ ଆହ୍ୱାନ । ସଂଗ୍ରାମର ଦିଗଦର୍ଶନ । ତେଣୁ ଜୀବନ ବୋଧ ସାହିତ୍ୟ ଏବଂ ବାସ୍ତବଧର୍ମୀ ଚରିତ୍ର ଚିତ୍ରଣ ଭିତରେ ମୋର ସାରସ୍ୱତ ସାଧନାରେ ଯଦି ବିଦଗ୍ଧ ପାଠକ କିଛି 'ଆଦର୍ଶବାଦ'ର ପ୍ରତିଫଳନ ଦେଖୁଛି, ତେବେ ତା ମୂଳରେ ରହିଚି ମୋ ବାସ୍ତବବାଦୀ ଦୃଷ୍ଟିକୋଣର ସୂକ୍ଷ୍ମ ଅନୁଶୀଳନ- ଏହା ହିଁ ଯଥାର୍ଥ ସତ୍ୟ ।" (ଲକ୍ଷ୍ମୀଧର ପରିକ୍ରମା, ପ୍ରକାଶକ-ଏକାମ୍ର ଥିଏଟର୍ସ-୧୯୮୪)

ଏହି କରିତକର୍ମା ଲକ୍ଷ୍ମୀଧରଙ୍କୁ ଓଡ଼ିଶା ସାହିତ୍ୟ ଏକାଡେମୀ/ସର୍କାର ଚିହ୍ନିଲା ଅନେକ ପରେ । ୨୧.୪.୧୯୯୯ରେ ତାଙ୍କୁ ଦିଆଗଲା 'ଅତିବଡ଼ି ଜଗନ୍ନାଥ ଦାସ' ପୁରସ୍କାର' (୧୯୯୭ ମସିହା ପାଇଁ) । ସେଇ ଅବସରରେ ସେ ଯୋଉ ଲିଖିତ ଭାଷଣ ପଢିଥିଲେ ସେଥିରେ ସେ କହିଥିଲେ, "ଏବେ ଆଖିକୁ ଦିଶୁ ନାହିଁ । କାନକୁ ଶୁଭୁ ନାହିଁ । ବିପ୍ଳବର ଛନ୍ଦରେ ଲେଉଟୁ ନାହିଁ । ଏବେ ଦେଶଟା ଆପଣଙ୍କର । ଛିନ୍ନମସ୍ତା ଓଡ଼ିଶାରେ ଭାଷା, ସାହିତ୍ୟ, ବଞ୍ଚାଇବା ଦାୟିତ୍ୱ ଆପଣଙ୍କର । ଓଡ଼ିଶା ସାହିତ୍ୟ, ସଂସ୍କୃତିକୁ ବିଶ୍ୱ ଦରବାରରେ ପହଞ୍ଚାଇବା ଦାୟିତ୍ୱ ଆପଣଙ୍କର । ମୋର ନିର୍ଜୀବ ସ୍ନାୟୁ ହାତ ଟେକି ଖାଲି ଏତିକି କହିବାକୁ ଚାହେଁ ଯେ ଭାଷା ମରିଯାଉଛି । ସାହିତ୍ୟ ଲୋକଙ୍କ ଠାରୁ ଦୂରେଇ ଯାଉଛି । ସଂସ୍କୃତିରେ ବିଚ୍ଛିନ୍ନ ବୀଣାର ବିଦେଶୀ ଝଂକାର । ଯଦି ସମ୍ଭବ ହୁଏ ଭାଷା, ସାହିତ୍ୟ, ସଂସ୍କୃତିକୁ ନୂତନ ସହସ୍ରାବ୍ଦରେ ସମ୍ଭାବନାମୟ କରିବା ପାଇଁ ଜଗନ୍ନାଥ ଦାସର ବଂଶଧରମାନେ ଆଗେଇ ଆସନ୍ତୁ । ଓଡ଼ିଶା ଶବ୍ଦ-କୋଣାର୍କର ଅଷ୍ଟମ ଆଶ୍ଚର୍ଯ୍ୟ ଗଢ଼ନ୍ତୁ । ହୁଏତ ମୋର ଅନ୍ଧଆଖି ଆଉ ପାରିରେ ଉଚ୍ଛୁଳି ଉଠିବ ।"

ଲକ୍ଷ୍ମୀଧର ବାବୁ ରାଉରକେଲାରେ ବେଶୀ ଦିନ ରହି ପାରି ନ ଥିଲେ । ଏଠି ମଧ

ଆନ୍ଦୋଳନ ସହିତ ସେ ଜଡ଼ିତ ହୋଇ ପଡ଼ିଥିଲେ ବୋଲି ତାଙ୍କ ଉପରେ ଆରମ୍ଭ ହେଲା ଅତ୍ୟାଚାର । କିନ୍ତୁ ତାଙ୍କ ବିପ୍ଳବୀ ଚରିତ୍ର କେବେ ମୁଣ୍ଡ ନୂଆଁଇ ନ ଥିଲା । ସେ ତାକୁ ସାମନା କରିଥିଲେ ।

ଯୋଉ ସମୟରେ ରାଉରକେଲା ଶିଳ୍ପସହର ଗଢ଼ି ଉଠୁଛି, ଯୋଉ ସମୟରେ ସେ ସହରର ଭାଷା, ସାହିତ୍ୟ ଓ ସଂସ୍କୃତି କଅଣ ହେବ, ତାର ରୂପରେଖ କଅଣ ହେବ ତାହା ସ୍ଥିର ହୋଇ ନାହିଁ, ଠିକ୍ ସେତିକି ବେଳେ ଲକ୍ଷ୍ମୀଧର ବାବୁଙ୍କ ଆବିର୍ଭାବ । ଯୋଉ ଦୁଇଟି ମହାନ ସମ୍ପଦ 'କଲଚରାଲ ଏକାଡ଼େମୀ' ଓ 'ନବପତ୍ର' ସେ ଇସ୍ପାତ ସହର ହାତରେ ଟେକି ଦେଇ ଯାଇଥିଲେ, ଭାଷା, ସାହିତ୍ୟ ଓ ସଂସ୍କୃତିକୁ ଏମାନଙ୍କ ଦାନ ଅତୁଳନୀୟ ଏକଥା ସ୍ୱୀକାର କରିବାକୁ ପଡ଼ିବ ।

ସହାୟକ ଗ୍ରନ୍ଥ :


୧. ଲକ୍ଷ୍ମୀଧର ପରିକ୍ରମା, ଏକାମ୍ର ଥିଏଟର୍ସ, ଭୁବନେଶ୍ୱର, ୧୯୮୪

୨. ଆଜିର ଡାକ, ସଂପାଦକ, ଲକ୍ଷ୍ମୀଧର ନାୟକ, ୧୯୮୪

୩. ଲକ୍ଷ୍ମୀଧର ନାୟକ ଏବଂ ମୋର ପ୍ରଥମ ପ୍ରତିଶ୍ରୁତିରେ ଦିନଗୁଡ଼ିକ, ବିଷ୍ଣୁ ରାଉତରାୟ,

୪. History of Indian Literature, Sahitya Academi, New Delhi.


* * *

# ସିଂହଭୂମିରେ ଓଡ଼ିଶା ଭାଷା, ସାହିତ୍ୟ ଓ ସଂସ୍କୃତିର ପ୍ରଚାର ଓ ପ୍ରସାର କ୍ଷେତ୍ରରେ ଲକ୍ଷ୍ମୀଧର ନାୟକଙ୍କ ଭୂମିକା

ରଣଜିତ୍ ମହାନ୍ତି

ଅନେକ ଏପରି ବ୍ୟକ୍ତି ଅଛନ୍ତି ଯୋଉମାନେ ମୃତ୍ୟୁ ପରେ ମଧ୍ୟ ସମାଜ ଓ ଜାତି ପାଇଁ କାଳ କାଳକୁ ଉଦାହରଣ ହୋଇ ରହିବେ। ଏପରି ଜଣେ ବ୍ୟକ୍ତି ହେଉଛନ୍ତି ଲକ୍ଷ୍ମୀଧର ନାୟକ।

ନଭେମ୍ବର-୧, ୧୯୧୩ ମସିହା, ଡେଲାଙ୍ଗ ଷ୍ଟେସନ, ବେରବୋଇ ନିକଟସ୍ଥ ଗୁଡୁପାଇଲେ ଗ୍ରାମରେ ବଳଭଦ୍ର ନାୟକଙ୍କ ଜ୍ୟେଷ୍ଠ ପୁତ୍ର ଭାବରେ ଜନ୍ମ ଗ୍ରହଣ କରିଥିଲେ।

ସେ ଏକାଧାରରେ ଜଣେ କବି, ଔପନ୍ୟାସିକ, ପ୍ରାଂବନ୍ଧିକ, ସମାଲୋଚକ, ସାମ୍ବାଦିକ, ନାଟ୍ୟକାର, ସୁବକ୍ତା ଏବଂ ସଂଗଠକ ଥିଲେ। ଜୀବନର ଅଧିକାଂଶ ସମୟ ସିଂହଭୂମି ଜିଲ୍ଲା ଜାମସେଦପୁରରେ ଅତିବାହିତ କରିଥିଲେ। ୧୯୩୭ ମସିହାରେ ଟାଟା କମ୍ପାନୀ ବିରୁଦ୍ଧରେ 'ମଜଦୁର' କବିତା ଲେଖି କମ୍ପାନୀର ତତ୍‌କାଳୀନ ଟାଉନ ଆଡମିନିଷ୍ଟ୍ରେଟର ଟି.ଏଚ୍. ବାର୍ଜଙ୍କ ଧମକ ଯୋଗୁଁ ବିନମ୍ରତା ସହିତ ଚାକିରୀରୁ ଇସ୍ତଫା ଦେଇଥିଲେ। ୧୯୩୮ ମସିହାରେ ଜାମସେଦପୁର ବିଦ୍ୟାଳୟମାନଙ୍କର ଟାଟା କମ୍ପାନୀ କର୍ତ୍ତୃପକ୍ଷ ଓଡ଼ିଆ ଶିକ୍ଷା ଉଠାଇ ଦେବାର ନିଷ୍ପତ୍ତି ବିରୁଦ୍ଧରେ ତାଙ୍କ ସଂପାଦନାରେ ପ୍ରକାଶ ପାଉଥିବା "ବିଚ୍ଛିନ୍ନା"ରେ ଲେଖିଥିବା ଯୋଗୁ କମ୍ପାନୀର ଭଡାଟିଆ ଗୁଣ୍ଡାଦଳଙ୍କ ଦ୍ୱାରା ଧମକ ପାଇଥିଲେ।

ସିଂହଭୂମିରେ ଓଡ଼ିଆ ଭାଷା ଓ ସଂସ୍କୃତିର ସୁରକ୍ଷା ଏବଂ ପ୍ରଚାର ଓ ପ୍ରସାର ପାଇଁ ୧୯୩୪ ମସିହାରେ "ସିଂହଭୂମି ଓଡ଼ିଆ ସାହିତ୍ୟ ସମାଜ" ଗଠନ କଲେ। ଏହି ସଂସ୍ଥା ମାଧ୍ୟମରେ ସମଗ୍ର ସିଂହଭୂମି ଅଂଚଳରେ ବହୁ ସମୟରେ ଓଡ଼ିଶାର ବହୁ ସାହିତ୍ୟିକ, ଲେଖକ ଏବଂ ଓଡ଼ିଶା ସରକାରଙ୍କର ତତ୍‌କାଳୀନ ମନ୍ତ୍ରୀମାନଙ୍କୁ ଡକାଇ ସାହିତ୍ୟ ସଭା ଏବଂ ସାଂସ୍କୃତିକ ଉତ୍ସବ କରାଇ ସିଂହଭୂମିରେ ଏକ ଆଲୋଡ଼ନ ଆଣି ପାରିଥିଲେ। ଏହି ଅନୁଷ୍ଠାନକୁ ୧୯୮୩ ମସିହାରେ ବିହାର ସରକାରଙ୍କ ଦ୍ୱାରା ପଞ୍ଜିକୃତ କରାଇଥିଲେ।

ଜାମସେଦପୁରରେ ଓଡ଼ିଆ କଳା ଓ ସଂସ୍କୃତିର ପ୍ରଚାର ଏବଂ ପ୍ରସାର ପାଇଁ "ମଞ୍ଚବିଚିତ୍ର" ନାମରେ ଏକ ଅନୁଷ୍ଠାନ ସ୍ଥାପନା କରି ୧୯୮୫ ମସିହା, ଅପ୍ରେଲ ୨୮ରେ ଏହାର ଉଦ୍‌ଘାଟନ ଉତ୍ସବ ସ୍ଥାନୀୟ "ରବୀନ୍ଦ୍ର ଭବନ"ରେ କରାଇ ଥିଲେ।

ଜାମସେଦପୁରରେ ଥିଲା ବେଳେ ଲକ୍ଷ୍ମୀଧର ନାୟକଙ୍କ ସହିତ ମୋର ବ୍ୟକ୍ତିଗତ ପରିଚୟ ନ ଥିଲା । ତାଙ୍କ ବିଷୟରେ ମୁଁ ସବୁବେଳେ ମୋର ବାପାଙ୍କ ଠାରୁ ଶୁଣିଥିଲି । ମୋ ସହିତ ଯେତେବେଳେ ପରିଚୟ ହେଲା । ସେ ସେତେବେଳକୁ ଜାମସେଦପୁର ଛାଡ଼ି ସାରିଥିଲେ ।

୧୯୮୨ ମସିହା ଜୁଲାଇ ମାସ ଜଟଣୀରେ ଥିଲା ବେଳେ "ଆଜିର ଡାକ" ପତ୍ରିକା ପ୍ରକାଶ ପାଉଥିବା 'ସମାଜ'ରୁ ଜାଣି ମୁଁ ଏକ ଶୁଭେଚ୍ଛା ପତ୍ର ତାଙ୍କ ପାଖକୁ ପଠାଇଥିଲି । ସେ ମୋ ପତ୍ର ପାଇ ମୋ ପାଖକୁ ଏକ ପୋଷ୍ଟ କାର୍ଡ ପଠାଇ ଥିଲେ । ସେ କାର୍ଡଟି ଆଜି ପର୍ଯ୍ୟନ୍ତ ସାଇତି ରଖିଛି । ସେ ଚିଠି ପଠାଇବାର ଅଳ୍ପଦିନ ପରେ ଜାମସେଦପୁର ଆସି ମୋ ଘରେ ମୋ ସହିତ ବ୍ୟକ୍ତିଗତ ଭାବେ ସାକ୍ଷାତ କରିଥିଲେ । ସେହି ସ୍ୱଳ୍ପ ସମୟ ସାକ୍ଷାତରେ ମୋତେ ଯେଉଁ ପ୍ରେରଣା ଓ ସାହସ ଦେଇଥିଲେ ତାକୁ ମୁଁ କେବେ ଭୁଲି ପାରିବି ନାହିଁ । ସେଇଥିଲା ମୋର ତାଙ୍କ ସହିତ ଶେଷ ସାକ୍ଷାତ ।

ତାଙ୍କ ମୃତ୍ୟୁ ପରେ ସିଂହଭୂମିର ଓଡ଼ିଆମାନଙ୍କ ମଧ୍ୟରେ ଯେଉଁ ଶୂନ୍ୟ ସ୍ଥାନ ସୃଷ୍ଟି ହେଲା ତାହା କଦାପି ପୂରଣ ହୋଇ ପାରିବ ନାହିଁ । ସେହି ମହାନ ବ୍ୟକ୍ତିତ୍ୱଙ୍କୁ ମୋର କୋଟି କୋଟି ପ୍ରଣାମ । ଜାମସେଦପୁର ଅଞ୍ଚଳରେ ତାଙ୍କ ସଂଗ୍ରାମୀ ସାହିତ୍ୟ ଓ ସମାଜସେବା ପାଇଁ ଏବେ ମଧ୍ୟ ସେ ପ୍ରେରଣାର ଉତ୍ସ ହୋଇ ରହିଛନ୍ତି ।

* * *

# ପ୍ରଥିତଯଶା ଲକ୍ଷ୍ମୀଧର - ଏକ ସ୍କେଚ୍

ମହେଶ୍ୱର ପଣ୍ଡା

ସାରା ଦେଶ ତଥା ବିଦେଶକୁ ଯାଇ ଦେଶାତ୍ମବୋଧରେ ନିଜକୁ ନିମଜ୍ଜିତ କରି ପ୍ରଖ୍ୟାତ ଔପନ୍ୟାସିକ, ଗାଳ୍ପିକ, କବି, ନାଟ୍ୟକାର, ପ୍ରାବନ୍ଧିକ, ସାମ୍ବାଦିକ, ଅଭିନେତା, ସମାଜ-ସଂସ୍କାରକ, ସୁବକ୍ତା ଏବଂ ଓଡ଼ିଶାରେ ଗଜଲର ଗୀତିକାର ଓ ତାର ଗାୟକ ଭାବେ ଯେ ଅକ୍ଷୟ କୀର୍ତ୍ତି ରଖି ଯାଇଚନ୍ତି ଖ୍ୟାତିନାମା ସାହିତ୍ୟିକ ଲକ୍ଷ୍ମୀଧର ନାୟକ ତାହା ତାଙ୍କୁ ଚିର ଅମର କରି ରଖିବ ।

୧୯୧୩ ଜାନୁଆରୀ ୧୧ ତାରିଖରେ ସେ ପୁରୀ ଜିଲ୍ଲା ଡେଲାଙ୍ଗର ଗୁଡୁ ପାଇଲି ଗ୍ରାମରେ ବଳଭଦ୍ର ନାୟକଙ୍କ ପୁତ୍ର ଭାବେ ଜନ୍ମଲାଭ କରି ୨୦୦୪ ଜାନୁଆରୀ ୧୮ ତାରିଖରେ ଦିଲ୍ଲୀରେ ପରଲୋକ ଗମନ କରିଥିଲେ ହେଁ ତାଙ୍କର ଅକ୍ଷୟ କର୍ମସାକ୍ଷର ଆଜି ତାଙ୍କୁ ଚିରସ୍ମରଣୀୟ କରି ରଖିଛି । ତାଙ୍କ ନୀରଳସ କର୍ମମୟ ଜୀବନ, ପରୋପକାରୀତା, ସାହିତ୍ୟ ସାଧନା, ଜାତିପ୍ରୀତି ଏବଂ ବିଶେଷ କରି ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ ତାଙ୍କୁ ଏବେ ମଧ୍ୟ ଅମର କରି ରଖିଛି । ବିହାରର ଜାମସେଦପୁର ଠାରେ ସେ ଦୀର୍ଘ ବର୍ଷ ଧରି ରହି ସେଠି ଷଢ଼େଇକଳା ଖରସୁଆଁକୁ ଓଡ଼ିଶାରେ ରଖିବାକୁ ଆନ୍ଦୋଳନ କରିଥିଲେ । ଗୋପବନ୍ଧୁଙ୍କୁ ଓଡ଼ିଆଙ୍କ ହୃଦୟରେ ଜାଗରୂକ କରି ରଖିବା ପାଇଁ ପ୍ରକାଶ କରିଥିଲେ 'ସିଂହଭୂମିରେ ଗୋପବନ୍ଧୁ' ତାହା ଥିଲା ଂ ଆନ୍ତରିକ ଦେଶପ୍ରେମ, ଆତ୍ମୀୟତା ଓ ସ୍ୱାଭିମାନର ଭାବ ପ୍ରବଣତା । ପଣ୍ଡିତ ଗୋଦାବରୀଶ ଓ ପଣ୍ଡିତ ନୀଳକଣ୍ଠ ଆଦିଙ୍କ ସଂସ୍ପର୍ଶରେ ଆସି ଟାଟା ଇସ୍ପାତ କାରଖାନାରେ ଚାକିରି ଛାଡ଼ିଲା ପରେ ସେ ବିଚ୍ଛିନ୍ନାଞ୍ଚଳରେ 'ବିଚ୍ଛିନ୍ନା' ନାମରେ ଏକ ପତ୍ରିକା ପ୍ରକାଶ କରିଥିଲେ । ତାହା ଥିଲା ଦେଶାତ୍ମବୋଧର ଏକ ନିଛକ ଉଦ୍ଦୀପନା । ଏହାଦ୍ୱାରା ସେ ଶାସକଙ୍କ କୋପଦୃଷ୍ଟିରେ ପଡ଼ି ନାନା ଭାବେ ଉତପୀଡ଼ିତ ହୋଇ ୧୯୫୪ରେ ଆସନ୍ତି ଶିଳ୍ପ ନଗରୀ ରାଉରକେଲା । ଏଠି ଡେଲିମାର୍କେଟ ପାଖ ମେନରୋଡ଼କୁ ଲାଗି ଏକ ଖପର ଘରେ ସେ ପଦଚାଳିତ ପ୍ରିଣ୍ଟିଂ ମେସିନ ପକାଇ ଛାପାକାର୍ଯ୍ୟ ଆରମ୍ଭ କରନ୍ତି । ଏହି ପଦଚାଳିତ ଟ୍ରେଡ଼େଲ ମେସିନ୍ ଓ କିଛି ସୀସା ଅକ୍ଷର ନେଇ ତାଙ୍କ ଛାପାଖାନା 'ହିନ୍ଦୁସ୍ଥାନ ପ୍ରିଣ୍ଟର୍ସ' ଆଗେଇ ଚାଲେ । ଏଠି ରାଉରକେଲା ଇସ୍ପାତ କାରଖାନା ପ୍ରତିଷ୍ଠା ହେବାର ଘୋଷଣା ପରେ ତାର ନିର୍ମାଣ ଲାଗି ବହୁ ଉଚ୍ଚ ପଦାଧିକାରୀ ନିଯୁକ୍ତ ରହି କାର୍ଯ୍ୟ କରୁ ଥାଆନ୍ତି । ସାମ୍ବାଦିକ ଭାବେ

ବିହାରରେ ବହୁ କାମ କରି ଲକ୍ଷ୍ମୀଧର ବାବୁ ଏଠାକୁ ଆସି ଏକ ସାପ୍ତାହିକ ପତ୍ରିକା 'ରାଉରକେଲା ପୋଷ୍ଟ' ଓଡ଼ିଆ ଓ ଇଂରାଜୀରେ ପ୍ରକାଶ କଲେ । 'ଆଜିର ଡାକ' ନାମକ ଏକ ସାପ୍ତାହିକ ମଧ୍ୟ ସେ ସଂପାଦନା କରିଥିଲେ । ଖାଲି ଏତିକି ନୁହେଁ ସେ ମଧ୍ୟ ଥିଲେ ମାତୃଭୂମି, ସ୍ୱରାଜ୍ୟ ଓ ପି.ଟି.ଆଇ.ର ସଂବାଦଦାତା ।

୧୯୬୧ ବେଳକୁ ରାଉରକେଲାର ବିଶିଷ୍ଟ ସାହିତ୍ୟିକ ରଜନୀ କାନ୍ତ ଦାସ, ବଂଶୀଧର ମହାପାତ୍ର ଓ ହରେକୃଷ୍ଣ ଦାସ ପ୍ରଭୃତିଙ୍କ ସହ ମିଳିତ ହୋଇ ସେ ଶୁଭାରମ୍ଭ କରିଥିଲେ ସାପ୍ତାହିକ ସାହିତ୍ୟ ଆସର । ଏଇଥିରୁ ହିଁ 'କଲଚରାଲ ଏକାଡ଼େମୀ'ର ଜନ୍ମ । ମୁଁ ୧୯୬୧ ଜାନୁଆରୀ ୧୦ ତାରିଖରେ ରାଉରକେଲା ଇସ୍ପାତ କାରଖାନାରେ ଯୋଗ ଦେଇଥାଏଁ । ଲକ୍ଷ୍ମୀଧର ବାବୁଙ୍କ ନାଁ ଓ କୃତି ଦେଖି ଥରେ ଯାଇ ତାଙ୍କ ପ୍ରେସରେ ଦେଖାକଲି । କିଛି କହିବା ପୂର୍ବରୁ ସେ ମୋର ସାହିତ୍ୟ ସାଧନା ବିଷୟରେ କହିଗଲେ । ମୁଁ ଆଶ୍ଚର୍ଯ୍ୟ ହେଲି । ଗୋଟାଏ ଆତ୍ମୀୟ ପରିବେଶ ଭିତରେ ଚ଼ ଜଳଖିଆ ଶେଷ ହେଲା । ତା ପରେ ଆରମ୍ଭ ହେଲା ସାହିତ୍ୟ ଚର୍ଚ୍ଚା, ପରେ ପରେ ମୁଁ ମଧ୍ୟ ଯୋଗ ଦେଲି ସେ ସାପ୍ତାହିକ ସାହିତ୍ୟ ଆସରରେ । ସେ ନିଜେ ପ୍ରାୟ ଅଧିକାଂଶ ଆସରରେ ଯୋଗ ଦିଅନ୍ତି ଓ ଗଳ୍ପ କବିତା ଉପରେ ଆଲୋଚନା କରନ୍ତି । ଏହି ସବୁ କବିତା ଆସରରେ ସେତେବେଳେ ଯୋଉମାନେ ଯୋଗ ଦେଉଥିଲେ ସେମାନେ ହେଲେ ବଂଶୀଧର ମହାପାତ୍ର, ହରେକୃଷ୍ଣ ଦାସ, ବିଷ୍ଣୁ ରାଉତରାୟ, ଭୂପେନ୍ ମହାପାତ୍ର ଗୋକୁଳ କିଶୋର ଦାସ, ବ୍ରଜ ପ୍ରଧାନ, ବାଣୀପଦ ଦାଶ ପ୍ରଭୃତି । ୧୯୬୨ ମସିହା ଏପ୍ରିଲ ମାସ ବେଳକୁ ସେହି ହିନ୍ଦୁସ୍ଥାନ ପ୍ରିଣ୍ଟର୍ସରେ ଆନୁଷ୍ଠାନିକ ଭାବେ ଜନ୍ମଲାଭ କରେ 'କଲଚରାଲ ଏକାଡ଼େମୀ' । ତାର ପ୍ରଥମ ସଭାପତି ସେ ନିଜେ । ଉପସଭାପତି ମୁଁ ଏବଂ ରଜନୀକାନ୍ତ ଦାସ ସଂପାଦକ ନିର୍ବାଚିତ ହେଲେ । ତାଙ୍କରି ପ୍ରେସରେ ଭୋଜି ସଭାରେ ଗୋଟାଏ ସୁନ୍ଦର ଓ ମଧୁର ପରିବେଶରେ ଜନ୍ମଲାଭ କଲା ନୂଆ କରି ଗଢ଼ି ଉଠୁଥିବା ଶିଳ୍ପ ନଗରୀ ରାଉରକେଲାର ପ୍ରଥମ ସାହିତ୍ୟାନୁଷ୍ଠାନ । ସେଇଠି ମଧ୍ୟ ସ୍ଥିର ହେଲା ଅନୁଷ୍ଠାନର ମୁଖପତ୍ର ଭାବେ ପ୍ରକାଶ ପାଇବ ତ୍ରୟୋମାସିକ ସାହିତ୍ୟ ପତ୍ରିକା 'ନବପତ୍ର' । ଅନୁଷ୍ଠାନର ସଂବିଧାନ ମଧ୍ୟ ଗୃହୀତ ହେଲା । ନିଷ୍ପତ୍ତି ନିଆଗଲା ଯେ ଅନୁଷ୍ଠାନ ପ୍ରଗତିଶୀଳ ସାହିତ୍ୟ ସର୍ଜନା କରିବ ଏବଂ ସଭ୍ୟମାନେ ମଧ୍ୟ ତାକୁଇ ଆଖି ଆଖି ଆଗରେ ରଖି କାମ କରିବେ ।

ସେଇ ୧୯୬୨ ମସିହା ପ୍ରାୟ ଅଗଷ୍ଟ ମାସରେ ତାଙ୍କ ସଂପାଦନାରେ ଆତ୍ମପ୍ରକାଶ କଲା 'ନବପତ୍ର' ଏବଂ ଏଥିରେ ମୋର କବିତା ନିୟମିତ ସ୍ଥାନ ପାଇଲା । ପରବର୍ତ୍ତୀ ଅବସ୍ଥାରେ

ମୋର ଦୁଇଟି କବିତା ସଂକଳନ 'ନବଦିଗନ୍ତ' ଓ 'ଆଶା କଲ୍ଲୋଳ'ରେ ସ୍ଥାନିତ ବହୁ କବିତା ଏହି ନବପତ୍ରରେ ପ୍ରକାଶ ପାଇଥିଲା। ଏଠାରେ ଆଉ ଗୋଟାଏ କଥା ମଧ୍ୟ କହିବା ଉଚିତ ହେବ। ନବପତ୍ରରେ ପ୍ରକାଶ ନିମିତ୍ତ ଲେଖାଗୁଡ଼ିକ ପ୍ରଥମେ ଆମର ସାପ୍ତାହିକ ସାହିତ୍ୟ ଆସରରେ ପଠିତ ଓ ଆଲୋଚିତ ହୋଇ ନିର୍ବାଚିତ ହେଉ ଥିଲା। ଏବଂ ସେତେବେଳେ ସାହିତ୍ୟ ପ୍ରତି, ବିଶେଷ କରି ଲକ୍ଷ୍ମୀଧର ବାବୁ ଓ ରଜନୀ ବାବୁଙ୍କ ପ୍ରେରଣାରେ, ଆମର ଆଗ୍ରହ ଏତେ ବେଶୀ ଥିଲା ଯେ ଆମେ ସବୁ ଅତି ଉତ୍କଣ୍ଠାର ସହିତ ସେହି ରବିବାରଟିକୁ ଅପେକ୍ଷା କରିଥାଉଁ। ଆମର ଏ ଆସର ସେତେବେଳେ ପାଳି କରି ସଦସ୍ୟମାନଙ୍କ ଘରେ ଅନୁଷ୍ଠିତ ହେଉଥିଲା।

ଲକ୍ଷ୍ମୀଧର ବାବୁ ମୋ ବ୍ୟକ୍ତିଗତ ଜୀବନକୁ ମଧ୍ୟ ପ୍ରଭାବିତ କରିଥିଲେ। ତାଙ୍କର ଅମାୟିକ ଆତ୍ମୀୟଗୁଣ ଏ ସଂପର୍କ ଯୋଡ଼ିବାରେ ସାହାଯ୍ୟ କରୁଥିଲା। ମୁଁ ଷ୍ଟୋର ଓ ପରଚେଜ ଡିପାର୍ଟମେଣ୍ଟରୁ ପବ୍ଲିକ୍ ରିଲେସନକୁ ସବ ଏଡିଟର ହେଇ ଆସିବାରେ ସେ ମୋତେ ଯେଉଁ ସାହାଯ୍ୟ କରିଥିଲେ ତାକୁ ଭୁଲି ହେବ ନାହିଁ।

ତାଙ୍କରି ଉଦ୍ୟମରେ ରାଉରକେଲାରେ ଦୁଇଟି ବଡ଼ ବଡ଼ ରାଜ୍ୟସ୍ତରୀୟ ସାହିତ୍ୟ ସଭା ଅନୁଷ୍ଠିତ ହେଲା। ଏହି ଦୁଇଟି ବାର୍ଷିକ ଉତ୍ସବରେ ଓଡ଼ିଶାର ବହୁ ନାମୀ ଦାମୀ ଲେଖକ ଯୋଗ ଦେଇଥିଲେ। ଏଇ ସୁଯୋଗରେ ଆମେ ସବୁ ପରିଚିତ ହେଲୁଁ କାଳିନ୍ଦୀ ପାଣିଗ୍ରାହୀ, ରାଧାମୋହନ ଗଡ଼ନାୟକ, ମାୟାଧର ମାନସିଂହ, ମନ ମୋହନ ମିଶ୍ର, ବିନୋଦ ନାୟକ, ନିତ୍ୟାନନ୍ଦ ମହାପାତ୍ର ଓ ରାଜକିଶୋର ରାୟ ପ୍ରଭୃତିଙ୍କ ସହିତ। ଲକ୍ଷ୍ମୀଧର ବାବୁଙ୍କର ଏମାନଙ୍କ ସହିତ ଖୁବ ଭଲ ସଂପର୍କ ଥିଲା। କହିବାକୁ କୁଣ୍ଠା ନାହିଁ ଯେ ଏଇଠି ହିଁ ଆମ ସାହିତ୍ୟିକ ଜୀବନର ପ୍ରଥମ ପୃଷ୍ଠାଗୁଡ଼ିକ ଉନ୍ମୋଚିତ ହୋଇଥିଲା।

ଲକ୍ଷ୍ମୀଧର ବାବୁ ଖାଲି ଔପନ୍ୟାସିକ ନ ଥିଲେ। ଥିଲେ ଜଣେ ପ୍ରତିଷ୍ଠିତ କବି ମଧ୍ୟ। ଗୋଟାଏ ବହୁମୁଖୀ ପ୍ରତିଭା। ତାଙ୍କର କବିତା ପୁସ୍ତକ 'ଖୋଲାଝର୍କା' ଓ 'କ୍ୱଚିତ ଜ୍ୟୋତ୍ସ୍ନା'ର ଉନ୍ମୋଚନ ବେଳେ ତାଙ୍କ କବି ପ୍ରତିଭା ସ୍ପଷ୍ଟ ହେଇ ଯାଇଥିଲା। ତାଙ୍କର କବିତା ଆବୃତ୍ତି ଏକ ଅସାଧାରଣ ପ୍ରତିଭା। ସେ ନିଜ କବିତାକୁ ଆବୃତ୍ତି କରି ତାକୁ ରେକର୍ଡ କରାଉଥିଲେ ଏବଂ ଆମ୍ଭମାନଙ୍କୁ ସେମିତି କରିବାକୁ ପରାମର୍ଶ ଦେଇଥିଲେ। କବିତାକୁ ଅଧିକ ଲୋକଙ୍କ ପାଖରେ ପହଞ୍ଚାଇବାକୁ ହେଲେ, ଅଧିକ ଆକର୍ଷଣୀୟ କରିବାକୁ ହେଲେ ଉତ୍ତମମାନର ଆବୃତ୍ତି ଆବଶ୍ୟକ ବୋଲି ସେ କହୁଥିଲେ। ଗଦ୍ୟପାଠର କଳା ବିଷୟରେ ସେ ଆମକୁ ଯେତେବେଳେ କହିଲେ ଆମେ ଆଶ୍ଚର୍ଯ୍ୟ ହେଇଗଲୁଁ। ଜଣେ ଉଚ୍ଚକୋଟୀର କବି ଭାବେ ତାଙ୍କ ପ୍ରଥମ କବିତା

'ବିରହିଣୀ' କୁ ନିଖିଳ ଉତ୍କଳ ଗଂଜାମ କବି ସମ୍ମିଳନୀରେ ଶ୍ରେଷ୍ଠ କବିତାର ମାନ୍ୟତା ଦେଇ ଯୁବରାଜ କୃପାସିନ୍ଧୁ ପଟ୍ଟନାୟକ ପ୍ରଦତ୍ତ ସ୍ୱର୍ଣ୍ଣ ପଦକ ପ୍ରଦାନ କରାଯାଇଥିଲା । ତାଙ୍କ 'ଯୁଗ ଯାତ୍ରୀ' କବିତା ସହକାରରେ ପ୍ରକାଶ ପାଇବା ପରେ ସେ ବହୁ ଉଚ୍ଚ ପ୍ରଶଂସା ଲାଭ କରିଥିଲେ ।

ତାଙ୍କ କୃତିର ସୀମା ନାହିଁ । ସାହିତ୍ୟର ସବୁ ବିଭାଗରେ ତାଙ୍କ ସାକ୍ଷର ବରାବର ଅମ୍ଳାନ ହୋଇ ରହିବ । କିନ୍ତୁ ଦୁଃଖର କଥା ଏହି ପ୍ରଚଣ୍ଡ ପ୍ରତିଭାଧରଙ୍କୁ ଓଡ଼ିଶା ଜାତି ଚିହ୍ନିଲା ଅନେକ ପରେ । ତାଙ୍କର ସମସ୍ତ ସାହିତ୍ୟ କୃତିକୁ ନେଇ ୧୯୯୭ରେ ଓଡ଼ିଶା ସାହିତ୍ୟ ଏକାଡେମୀ ତାଙ୍କୁ ରାଜ୍ୟର ସର୍ବୋଚ୍ଚ ସାହିତ୍ୟ ସମ୍ମାନ 'ଅତିବଡ଼ି ଜଗନ୍ନାଥ ଦାସ' ପୁରସ୍କାର ଦେଇ ଗୌରବଶ୍ରୀ ମଣ୍ଡିତ କରିଥିଲେ । ଏହା ଥିଲା ତାଙ୍କ ଜୀବନର ଅନ୍ତିମ କାଳର ଘଟଣା । ସେତେବେଳକୁ ତାଙ୍କ ଶରୀରର ମୁଖ୍ୟ ଅଂଗ ଚକ୍ଷୁ ଓ କର୍ଣ୍ଣ ଇତ୍ୟାଦି ଅକର୍ମଣ୍ୟ ପ୍ରାୟ ହୋଇ ଯାଇଥିଲା । ପୁରସ୍କାର ଗ୍ରହଣ କଲାବେଳେ ସେ ଭାବ ବିହ୍ୱଳ ହୋଇ କହିଥିଲେ ଯେ "ଛିନ୍ନମସ୍ତା ଓଡ଼ିଶାର ଭାଷା, ସାହିତ୍ୟ ଓ ସଂସ୍କୃତି ବଞ୍ଚାଇ ରଖି ତାକୁ ବିଶ୍ୱ ଦରବାରରେ ପହଞ୍ଚାଇବା ଏଣିକି ଆପଣମାନଙ୍କ ଦାୟିତ୍ୱ । ଆର ପାରିରୁ ମୁଁ ତାହା ହିଁ ଦେଖୁଥିବି ।"

* * *

(ଏପ୍ରିଲ ୧ରେ ରାଜ୍ୟବ୍ୟାପି ଉତ୍କଳ ଦିବସ ପାଳନ କରାଯାଇଚି । ଏହି ଅବସରରେ ସିଂହଭୂମି କାହିଁକି ଓଡ଼ିଶା ସହିତ ମିଶି ନ ପାରିଲା ତାର କିଛି ବିଶ୍ଳେଷଣ ଥାଇ, ଯେଉଁ ଲେଖାଟି ୧୯୩୭ରେ ଜାମଶେଦପୁରରୁ ପ୍ରକାଶ ପାଉଥିବା 'ବିଚ୍ଛିନ୍ନ'ରେ ପ୍ରକାଶ ପାଇଥିଲା, ସେଇଟି ଏଠାରେ ଉଦ୍ଧାର କରାଗଲା ।)

### ଓଡ଼ିଶା ବିଧାନ ସଭାର ସଭ୍ୟା :

## ନାରୀ ନେତ୍ରୀ ଶ୍ରୀମତୀ ସରଳା ଦେବୀଙ୍କ ଚିଠି

ସ୍ନେହର ଲକ୍ଷ୍ମୀଧର

ତୁମର ଚିଠି ଓ ପତ୍ରିକା ପାଇଥିଲି । ଏହି ପତ୍ରିକା ଦ୍ୱାରା ସିଂହଭୂମିବାସୀ ବିଚ୍ଛିନ୍ନ ଓଡ଼ିଆଙ୍କ ଭିତରେ ନବ ଜୀବନର ସଞ୍ଚାର ହେବ ବୋଲି ପ୍ରକୃତରେ ମୋର ଧାରଣା । ଆଉ ଖଣ୍ଡିଏ ସାପ୍ତାହିକ ପତ୍ରିକା ମଧ ସେହି ଅଞ୍ଚଳମାନଙ୍କରେ ବାହାରିବା ଉଚିତ । ତାହା ନ ହେଲେ କେବଳ ସାହିତ୍ୟର ପ୍ରସାର ଓ ପ୍ରଚାର ହେବା ଦ୍ୱାରା, ସିଂହଭୂମିର ଅବହେଳିତ ଓଡ଼ିଆଙ୍କର ଯାହା ଚିରବାଂଛିତ ଲକ୍ଷ୍ୟ ତାହାର ପୂର୍ଣ୍ଣତା ସାଧିତ ହେବା ସମ୍ଭବପର କି ?

ମୁଁ ଯେତେବେଳେ ସିଂହଭୂମି କଥା ଭାବେଁ, ଅନ୍ୟ ପ୍ରଦେଶର ସରକାର ଓ ସରକାରୀ ଲୋକ ତଥା ଲୋକ-ପ୍ରତିନିଧିମାନଙ୍କର ସଯତ୍ନ ବ୍ୟବହାର ସମ୍ବନ୍ଧରେ ଅବହିତ ହୁଏଁ, ସେତେବେଳେ ମୋର ବକ୍ଷ ଦୁଃଖରେ, ବିରକ୍ତିରେ, କ୍ଷୋଭରେ ପେଶା ପେଷି ହୋଇ ପଡ଼େ । ଯେଉଁମାନେ ଓଡ଼ିଶା "ସଦର ମୋଗଲବନ୍ଦୀ"ରେ ଅଛନ୍ତି, ସେମାନଙ୍କର କର୍ତ୍ତବ୍ୟରେ ଅବହେଳା, ତଥା କଂଗ୍ରେସ କମିଟିର ସମ୍ପୃକ୍ତ ନେତାମାନଙ୍କର ଅକ୍ଷମଣୀୟ ଉଦାସୀନତାରେ ମନରେ ବେଳେ ବେଳେ ଘୋର ନିରାଶା ଆସେ । ରବିନ୍ଦ୍ର ନାଥଙ୍କର ପ୍ରଚରିତ "ବିଶ୍ୱଭାତୃତ୍ୱ" (Cosmopolitan views)ର ପ୍ରୟୋଜନ ଜଗତରେ ରହିଛି । 'ନିଖିଳ ଭାରତ' ପ୍ରତି ମମତା ମଧ ପ୍ରତ୍ୟେକ ଭାରତୀୟଙ୍କର ରହିବା ସ୍ୱାଭାବିକ ଓ ସୁନ୍ଦର, ଏଥିରେ କେହି ଅମତ ହେବେ ନାହିଁ ଏବଂ ନୀଚ ସାମ୍ପ୍ରଦାୟିକ ଭାବ ଯେ ଦେଶର ସ୍ୱାଧୀନତା ପକ୍ଷରେ ବିଷମ ବିଷ ପରି ପରିତ୍ୟକ୍ତ ହେବା ଉଚିତ, ଏଥିରେ ମଧ ସନ୍ଦେହର ଅବକାଶ ନାହିଁ । ତଥାପି ଗୋଟିଏ ଜାତିକୁ ଜଗତରେ ଛିଡ଼ା ହେବାକୁ ହେଲେ, ତାହାର ଦେଶ, ଲୋକସଂଖ୍ୟା, ସଭ୍ୟତା, କଲଚର ସବୁଆଡ଼କୁ ଅତ୍ୟନ୍ତ ଆଗ୍ରହର ସହିତ ନଜର ଦେବା ଓ ସେଥିପାଇଁ ଚରମ ତ୍ୟାଗ କରିବାକୁ ସବୁବେଳେ ପ୍ରସ୍ତୁତ ରହିବା ଯେ ଗୋଟାଏ ବାଜେ କଥା ନୁହେଁ ଏବଂ କଥାର ଗୁରୁତ୍ୱ ଯେ ପ୍ରତି ଓଡ଼ିଆଙ୍କର ଉପଲବ୍ଧି କରିବା କର୍ତ୍ତବ୍ୟ, ଏହା ଏ ଯୁଗରେ ଯେଉଁମାନେ ନ ଭାବନ୍ତି, ସେମାନେ ଆଉ ଯାହା ହୁଅନ୍ତ ଓଡ଼ିଆ ନୁହନ୍ତି, ଓଡ଼ିଆ ବୋଲି ନିଜକୁ ମନ ପ୍ରାଣରେ ସେମାନେ ଭାବିବାକୁ ହୁଏତ ଘୃଣାବୋଧ କରନ୍ତି । ଏଥର କଂଗ୍ରେସ ନିଖିଳ ଭାରତ Working Com.ରେ

ଚରିଜଣ A.I.C.C. ମେମ୍ବର ଶ୍ରୀଯୁକ୍ତ ଭାଗିରଥି ମହାପାତ୍ର, ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀ ହରିହର ଆଚାର୍ଯ୍ୟ ଓ ଶ୍ରୀ ନୀଳକଣ୍ଠ ଦାସ ଯେପରି ଅକ୍ଷମଣୀୟ ଅମାନୁଷିକ ଅପରାଧ କରି ଓଡ଼ିଆ ଜାତି ପ୍ରତି ଘୋର ଅବିଚାର କରିଅଛନ୍ତି ଓ ନିଜର ଭ୍ରମଦ୍ୱାରା ଦେଶପତି ବିଶ୍ୱାସଘାତକତାର ଚୂଡ଼ାନ୍ତ ପ୍ରମାଣ ଦେଇଛନ୍ତି, ସିଂହଭୂମି ସମ୍ପର୍କରେ ତାହାକୁ ପୁଣି ଲେଉଟାଇବାର କ୍ଷମତା ଆଉ କାହାରି ନାହିଁ। ଶ୍ରୀ ନୀଳକଣ୍ଠ ଦାସ ମଧ୍ୟ ମେମ୍ବର A.I.C.C.ଥାଇ Working Commiteeରେ ଯୋଗ ଦେଇ ନାହାନ୍ତି। ତାଙ୍କର ଇତି ପୂର୍ବେ ଥରେ A.I.C.C.Working Commitee ଅନୁପସ୍ଥିତି ହେତୁ ସିଂହଭୂମି ନିଖିଳଭାରତ କଂଗ୍ରେସ ଦ୍ୱାରା ବିହାର ସହିତ ମିଶିଗଲା। ପୁଣି ଏଥର ମଧ୍ୟ ତାଙ୍କର ଅନୁପସ୍ଥିତି ସେହି ଅନ୍ୟାୟକୁ ଆହୁରି କାଏମ କରିଦେଲା। ଆମ୍ଭମାନଙ୍କର ମନ୍ତ୍ରୀ ମଣ୍ଡଳ ମଧ୍ୟ କଲିକତାରେ ଥାଇ ଏ ସମ୍ବନ୍ଧରେ କିଛି ଖବର ନ ରଖି ଉଚ୍ଚବାଚ୍ୟ କରିବାର ଅବସର ପାଇଲେ ନାହିଁ। ପୁଣ୍ୟାତ୍ମା ଗୋପବନ୍ଧୁ ଓ ଗୋଦାବରୀଶ ମିଶ୍ର M.L.A. ଙ୍କ ଉପରେ ସିଂହଭୂମି ସଂକ୍ରାନ୍ତ କାର୍ଯ୍ୟ କରିବା ପାଇଁ ନିର୍ଭର କରିଥିଲେ। ସେଥିପାଇଁ ସେ ମହାଶୟ ଓଡ଼ିଆ ପ୍ରଚାରାଦି କାର୍ଯ୍ୟ ପାଇଁ କିଛି ଦିନ ସିଂହଭୂମିରେ ରହି ସେଠାରେ ନିଷ୍ଠାର ସହିତ କାର୍ଯ୍ୟକରି ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ପୂର୍ବରୁ ନିଜ ଘରକୁ ଚାଲି ଆସିଲେ। ୰ ଅନନ୍ତ ମିଶ୍ରଙ୍କର ଅକାଳ ମୃତ୍ୟୁ ମଧ୍ୟ ବିଚ୍ଛିନ୍ନ ଓଡ଼ିଆଙ୍କର ଗଭୀର ଦୁଃଖ ଓ କ୍ଷତିର ସୂଚନା ଦେଇଛି। ଏଥିରୁ ଅନୁମିତ ହୁଏ ସମସ୍ତେ ଦେଶ ସେବା କରିବାକୁ ଚାହାନ୍ତି, କିନ୍ତୁ ନିଜ ନିଜ ପଥରେ, ନିଜ ନିଜ ଢଙ୍ଗରେ। କିନ୍ତୁ ଗୋଟାଏ ସାରା ଓଡ଼ିଆ ଜାତିର ସାମଗ୍ରିକ ବିକାଶ ପ୍ରକାଶ ଦିଗରେ କେହି ନିଷ୍ଠାପର ଭାବରେ ପ୍ରୟାସ କରିବାକୁ ଧୈର୍ଯ୍ୟ ରଖି, ସେହି ଅଞ୍ଚଳରେ ପଡ଼ିରହି ସେହି କାର୍ଯ୍ୟକୁ ଜୀବନର ଏକମାତ୍ର ବ୍ରତ ସ୍ୱରୂପ କରିନେବାକୁ ନାରାଜ। କାରଣ ଜାତି ଯଦିଓ ଭବିଷ୍ୟତରେ ଏହି କାର୍ଯ୍ୟର ଫଳ ପାଇ ଉପକୃତ ହେବ, ବର୍ତ୍ତମାନ ହାତନଗାଦ ଏହି କାର୍ଯ୍ୟଦ୍ୱାରା ବ୍ୟକ୍ତିଗତ ଭାବରେ କାହାରି ଇଷ୍ଟ ସିଦ୍ଧିର ସମ୍ଭାବନା ଆଦୌ ନାହିଁ।

'ବିଚ୍ଛିନ୍ନା' ବିଚ୍ଛିନ୍ନ ସିଂହଭୂମିକୁ ଉତ୍କଳ ସହିତରେ ଯୋଡ଼ିବାର ଯେ ଆଶା କରିଛି, ତାହାକୁ ଏଥର ଯାଇଥିବା A.I.C.C.ମେମ୍ବରମାନେ ସମୂଳେ ଉଚ୍ଛେଦ କରି ଆସିଛନ୍ତି। କିନ୍ତୁ ସେଥିପାଇଁ ବିଚ୍ଛିନ୍ନାର କର୍ମକର୍ତ୍ତାମାନେ ଭାଙ୍ଗି ପଡ଼ିବେ ବୋଲି ମୁଁ ଧାରଣା କରୁ ନାହିଁ। ସିଂହଭୂମିର ଓଡ଼ିଆଙ୍କୁ ପ୍ରାଥମିକ ଶିକ୍ଷା ଦେଇ ଆଗ ଆପଣାର କରି ବିପୁଳ ଆନ୍ଦୋଳନର ବୀଜ ସେହିଠାରେ ବପନ କରିବାକୁ ହେବ। ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କର ଏ ଦିଗରେ ଯେ କାର୍ଯ୍ୟ, ତାହା ପ୍ରଶଂସନୀୟ ହେଲେ ହେଁ, ସେ ଯେ ୨ ୨ଟି ପ୍ରାଥମିକ ସ୍କୁଲମାନଙ୍କୁ ନ ଚାହିଁ କେବଳ ମାଇନର ସ୍କୁଲଟି ପ୍ରତି ଆଖି ରଖି କଳ୍ପନା ଉଦ୍ୟାନରେ ପୁଷ୍ପ ଚୟନ କଲାଭଳି

ଭାବୀ ସିଂହଭୂମିର ଚାରୁ-ଚିତ୍ର ଦେଖୁଛନ୍ତି, ଏହା ଭାବିଲେ ବଡ଼ ଦୁଃଖ ହୁଏ । ଜାତିପାଇଁ ତ୍ୟାଗ କରିବାକୁ ହେଉଛି ଏବଂ ଆମ୍ଭେମାନେ କରୁଛୁ, କିନ୍ତୁ ଓଡ଼ିଶାର ଏପରି ପୁଅ କି ଝିଅ ବି କେହି ନାହିଁ ଯେ କି "All India fame & name"ରେ ଜଳାଞ୍ଜଳି ଦେଇ କେବଳ ବୃହତ୍ତର ଓଡ଼ିଶା ଓ ଓଡ଼ିଆ ଜାତି ପାଇଁ ଅକ୍ଳାନ୍ତ ଭାବରେ ଜୀବନ ଢାଳିଦେବ ? ଏଇ ପ୍ରଶ୍ନର ଜବାବ ତୁମଠୁଁ ମୁଁ ଚାହେଁ । ଇତି ।                    ମଙ୍ଗଳାକାଙ୍‌କ୍ଷିଣୀ

ସରଳା ଅପା

(ଲକ୍ଷ୍ମୀଧର ନାୟକ ସଂପାଦିତ 'ଆଜିର ଡାକ'
ମେ, ଜୁନ, ଜୁଲାଇ-୧୯୮୪ ସଂଖ୍ୟାରୁ ସଂଗୃହିତ ।)

# ଲକ୍ଷ୍ମୀଧର ନାୟକଙ୍କ ସହ
# ଏକ ବିଶେଷ ସାକ୍ଷାତକାର

ପ୍ରଶ୍ନ - ଆପଣତ ସାହିତ୍ୟର ସବୁ ବିଭାଗରେ ଲେଖିଛନ୍ତି । ଏଥିରୁ କେଉଁ ବିଭାଗଟି ଆପଣଙ୍କର ମନୋନୀତ ବିଭାଗ ?

ଉତ୍ତର-ମୋ ପାଇଁ ଲେଖାଲେଖି କରିବା ଏକ ଆନନ୍ଦ ଓ ଅନୁଭୂତିର କଥା । ସେଇଥିପାଇଁ ସାହିତ୍ୟର କୌଣସି ଏକ ନିର୍ଦ୍ଦିଷ୍ଟ ବିଭାଗ ପ୍ରତି ମୋର କୌଣସି ମୋହ ବା ଆସକ୍ତି ନାହିଁ । ମୋ ଲେଖକ ଜୀବନର ଆରମ୍ଭ କବିତାରୁ । ତା ଆଗରୁ ମୁଁ ଛବି ଆଙ୍କିବାକୁ ଏବଂ ଚିତ୍ର କରିବାକୁ ସୁଖ ପାଉଥିଲି । ସାରସ୍ୱତ କ୍ଷେତ୍ରକୁ ଆସି, କବିତା ଲେଖାରୁ ଆରମ୍ଭ କରି, ଗଳ୍ପ, ଉପନ୍ୟାସ, ନାଟକ, ପ୍ରବନ୍ଧ ଏବଂ ଜୀବନୀ ସବୁ କିଛି ଲେଖି ଚାଲିଚି । ଲେଖିବାକୁ ବସିଲା ବେଳେ, ଚିନ୍ତା ରାଜ୍ୟରେ ଯୋଉ ଅନୁଭୂତିର ଆବେଗ ଦେଖାଦିଏ, ସାହିତ୍ୟର କୋଉ ବିଭାଗକୁ ମାଧ୍ୟମ କରି ଲେଖିଲେ ତା' ସର୍ବାଧିକ ସୁନ୍ଦର ଓ ଫଳପ୍ରଦ ହେବ ତା ବିଚାର ବିମର୍ଷ କରି କଥା ବସ୍ତୁର ଗୁଣାତ୍ମକ ମୂଲ୍ୟ ବିବେଚନା କରି ତାକୁ ବର୍ଣ୍ଣନା କରିବାକୁ ଉପଯୁକ୍ତ ବିଭାଗଟି କ'ଣ ହେବ ତା ନିର୍ଣ୍ଣୟ କରେଁ ଏବଂ ଲେଖା ଆରମ୍ଭ କରେଁ । ଏହା କହିବାର ଉଦ୍ଦେଶ୍ୟ ହେଲା- କବିତାରେ ଯୋଉକଥା ଲେଖିବା ସୁନ୍ଦର, ଅନେକ ସମୟରେ ଦେଖିଚି, ସଂଳାପ ଧର୍ମୀ ନାଟକ, ବା ବର୍ଣ୍ଣନାତ୍ମକ ଉପନ୍ୟାସ ଲେଖା ପାଇଁ ତାହା ଉପଯୁକ୍ତ ନୁହେଁ । ତେଣୁ ମୁଁ ସାହିତ୍ୟର ପ୍ରତ୍ୟେକ ବିଭାଗକୁ ତା'ର ସ୍ୱାତନ୍ତ୍ର୍ୟ ପାଇଁ ସମ୍ମାନ ଦେଇ ଆସିଚି । ଏଇ ଦୃଷ୍ଟିରୁ ସାହିତ୍ୟର ପ୍ରତ୍ୟେକ ବିଭାଗ ଗୁଡ଼ିକ ମୋର ଖୁବ୍ ପ୍ରିୟ । ପୁଣି ଯେ ସ୍ରଷ୍ଟା, ସେ ତା' ସୃଜନଶୀଳତା ଭିତରେ ଛୋଟ ବଡ଼ ପ୍ରଭେଦକୁ ମଧ୍ୟ ସହ୍ୟ କରି ପାରେନା । ସେଇଥି ପାଇଁ, କବିତା ଲେଖି ଆବୃତ୍ତି କରିବାରେ ମଧ୍ୟ ସେହିପରି ଆତ୍ମସନ୍ତୋଷ ଲାଭ କରିଚି । ଏବଂ ଗଳ୍ପ ଉପନ୍ୟାସ, ପ୍ରବନ୍ଧ, ଏ ସବୁକୁ ମଧ ଶ୍ରୋତାମାନଙ୍କୁ ପଢ଼ି ଶୁଣାଇବାରେ ଏବଂ ନିଜେ ପଢ଼ି ତନ୍ମୟ ହେବାରେ କୌଣସି ଅସୁବିଧାର ସମ୍ମୁଖୀନ ହେଇ ନାହିଁ । ଏ ସବୁଥିରୁ ମୁଁ ଆହରଣ କରିଚି ବିଶୁଦ୍ଧ ଆନନ୍ଦ ।

ପ୍ରଶ୍ନ - ଆପଣ ସାହିତ୍ୟରେ ବାସ୍ତବତାକୁ ନା ଆଦର୍ଶକୁ-କାହାକୁ ପ୍ରତିଫଳନ କରିବାକୁ ଆଗ୍ରହୀ ।

ଉତ୍ତର-ମୁଁ ବାସ୍ତବଧର୍ମୀ । ଗାନ୍ଧିଙ୍କୁ ପଢ଼ି ସତ୍ୟ, ଅହିଂସା ଆଉ ସ୍ୱାଧୀନତା ଏ ସବୁ ସମ୍ପର୍କରେ ଭାବିବାକୁ ବସିଲା ବେଳେ, 'ମାର୍କସ' ପଢ଼ି 'ମାନବବାଦୀ' ହେବାକୁ ଅନୁପ୍ରାଣିତ ହେଇଚି । ଫଳରେ ସମାଜର ବାସ୍ତବ ଚିତ୍ର ଦେବାକୁ ଯାଇ, ନିଃସ୍ୱ, ନିରନ୍ନ,

ନିଗୃହୀତର ଦୁଃଖ ଦୁର୍ଦ୍ଦଶାକୁ ମୋ ଲେଖାରେ ଯେପରି ବିବୃତ କରିଚି, ସେଇପରି-ସମାଜର ଏକ ସୁବିଧାବାଦୀ ଶ୍ରେଣୀ, ମନୋପଲିଷ୍ଟ ଗ୍ରୁପ, ଦୁର୍ବଳ ଶ୍ରେଣୀକୁ ଲୁଣ୍ଠନ କରିବାକୁ ଯୋଉ ଚକ୍ରାନ୍ତ ଚଳେଇଚି, ତାର ବାସ୍ତବ ଚିତ୍ର ମଧ୍ୟ ଦେଇଚି ମୋ କବିତା, ଗଳ୍ପ, ଉପନ୍ୟାସ ଏବଂ ନାଟକରେ । ଏ ସବୁ ଭିତରେ ରହିଛି, ଶୋଷଣ ଆଉ ଅତ୍ୟାଚାର ବିରୁଦ୍ଧରେ ବିଦ୍ରୋହ ଆଉ ବିପ୍ଳବର ସ୍ୱର । ଏପରିକି ମୋ ରୋମାଣ୍ଟିକ ଲେଖାର ଛତ୍ରେ ଛତ୍ରେ ବି ନାୟକ ନାୟିକାଙ୍କ ମିଳାମିଶା କେବଳ ଦେହ ସମ୍ଭୋଗ ସର୍ବସ୍ୱ ଭାବବିଳାସ ନୁହେଁ ବରଂ ସେମାନଙ୍କ ନିଭୃତ ସଂଳାପରେ ରହିଚି ଦେଶାତ୍ମବୋଧ, ଜାତୀୟତା ବୋଧ ଏବଂ ସତ୍ୟାନୁସନ୍ଧାନୀ ସୁଖ ସମୃଦ୍ଧ ସମାଜ ପ୍ରତିଷ୍ଠା ପାଇଁ ଏକ ଅଭିଯାନର ନିର୍ଭୀକ ଆହ୍ୱାନ । ସଂଗ୍ରାମର ଦିଗ୍‌ଦର୍ଶନ ।

ତେଣୁ ଜୀବନବୋଧ ସାହିତ୍ୟ ଏବଂ ବାସ୍ତବଧର୍ମୀ ଚରିତ୍ର ଚିତ୍ରଣ ଭିତରେ ମୋ ସାରସ୍ୱତ ସାଧନାରେ ଯଦି ବିଦଗ୍ଧ ପାଠକ କିଛି ଆଦର୍ଶବାଦର ପ୍ରତିଫଳନ ଦେଖିଚି, ତେବେ ତା ମୂଳରେ ରହିଚି ମୋ ବାସ୍ତବବାଦୀ ଦୃଷ୍ଟି କୋଣର ସୂକ୍ଷ୍ମ ଅନୁଶୀଳନ, ଏହାହିଁ ଯଥାର୍ଥ ସତ୍ୟ ।

ପ୍ରଶ୍ନ- ଆପଣ କୌଣସି ରାଜନୈତିକ ଆଦର୍ଶବାଦୀ କି ?

ଉତ୍ତର-ମୁଁ କୌଣସି ନିର୍ଦ୍ଦିଷ୍ଟ ରାଜନୈତିକ ଗୋଷ୍ଠି ବା ସଂଘ ସହିତ ସାମିଲ୍ ନୁହେଁ । ବରଂ କହିବି ସାର୍ବଜନୀନ ଭାବ ସମ୍ପନ୍ନ ମହାମାନବ ସଂଘର ମୁଁ ଏକ ଅଖ୍ୟାତ ସଭ୍ୟ । ଏବଂ ଏ କ୍ଷେତ୍ରରେ ମୋର ବଳିଷ୍ଠ ମତବାଦ ହେଲା- ଯେଉଁ ଲେଖକ ସାଧାରଣ ମଣିଷକୁ ଶ୍ରଦ୍ଧା କରେ, ଯେଉଁ ସାହିତ୍ୟିକ 'ମାନବିକତା'ର ଜୟ ଜୟକାର କରେ, ତାକୁ ନିଶ୍ଚିତ ଭାବେ, ସମାଜନୀତି, ଅର୍ଥନୀତି ଏବଂ ରାଜନୀତି ଏ ସବୁ କିଛିଠୁ ଉର୍ଦ୍ଧ୍ୱରେ ରହିବାକୁ ପଡ଼ିବ । ମୋ ଲେଖାରେ, ଯୋରଜବରଦସ୍ତ, ଉଦ୍ଦେଶ୍ୟମୂଳକ ଭାବେ, ଆଦର୍ଶବାଦ ପ୍ରଚାର ନ କରି ମୁଁ 'ବାସ୍ତବତା'କୁ ଅଗ୍ରାଧିକାର ଦେଇଥିବା ଦୃଷ୍ଟିରୁ, କ୍ଷମତାଲୋଭି ନେତାମାନଙ୍କ ଦ୍ୱାରା ପରିଚାଳିତ ରାଜନୈତିକ ଅନୁଷ୍ଠାନ ମାନଙ୍କର ଜନସାଧାରଣଙ୍କ ସେବା ପାଇଁ ଆନ୍ତରିକ କର୍ତ୍ତବ୍ୟପରାୟଣତା ଅଛି ବୋଲି ମୋର ବିଶ୍ୱାସ ନୁହେଁ । ତେଣୁ କୌଣସି ରାଜନୈତିକ ଅନୁଷ୍ଠାନର ମୁଁ ଅନ୍ଧସ୍ତାବକ ନୁହେଁ । କିନ୍ତୁ ମଣିଷ ସମାଜକୁ ସବୁ ସଂକୀର୍ଣ୍ଣତାର ଉର୍ଦ୍ଧ୍ୱକୁ ପଠାଇବା ପାଇଁ ଯେଉଁମାନଙ୍କ କଣ୍ଠରେ ସମଗ୍ର ବିଶ୍ୱରେ ଉଠିଚି କ୍ରାନ୍ତିର ଶ୍ଳୋଗାନ, ମୁଁ ତାକୁ ଧ୍ୟାନସ୍ଥ ହେଇ ଶୁଣିଚି, ଏବଂ ସେଥିରେ ଦେଖିଚି ଯଦି ଅଙ୍ଗୀକାରର ପ୍ରତିଶ୍ରୁତି ତାକୁ ସମ୍ମାନ ଦେଇଚି, ଗ୍ରହଣ କରିଚି ସ୍ଥଳ ବିଶେଷରେ ।

ପ୍ରଶ୍ନ - ପ୍ରାୟ ଅର୍ଦ୍ଧ ଶତାବ୍ଦୀ ଧରି ଆପଣଙ୍କ ସାହିତ୍ୟିକ ଜୀବନ ନାନାଦି ଘାତ ପ୍ରତିଘାତ

ମଧ୍ୟ ଦେଇ ଗତି କରି ଆସିଚି । କିନ୍ତୁ ବର୍ତ୍ତମାନ ଯେଉଁ ପ୍ରକାର ବ୍ୟବସାୟୀ ମନୋବୃତ୍ତିର ସାହିତ୍ୟ ସୃଷ୍ଟି ହେଉଚି ଏ ସଂପର୍କରେ ତଥା ଓଡ଼ିଆ ସାହିତ୍ୟର ଭବିଷ୍ୟତ ସମ୍ପର୍କରେ ଆପଣଙ୍କ ଅଭିମତ କ'ଣ ?

ଉତ୍ତର- ଇଏ ଏକ ଦୁରୂହ ପ୍ରଶ୍ନ । ପଚାଶ ବର୍ଷ ଧରି ଲେଖୁଚି-ନାନା ଘାତ ପ୍ରତିଘାତ ଭିତରେ । ହଁ, ଯା ବି ଠିକ୍ ।

ଟାଟା କମ୍ପାନୀ ବିରୁଦ୍ଧରେ, (ଜାମସେଦ୍ ପୁରରେ ଥିଲା ବେଳେ) 'ମଜ୍‌ଦୁର' କବିତା ଲେଖିଥିଲି । କମ୍ପାନୀର ତତ୍‌କାଳୀନ ଟାଉନ ଆଡ଼ମିନିଷ୍ଟ୍ରେଟର ମିଷ୍ଟର ଟି.ଏନ୍. ବାର୍ଜ, ତାଙ୍କ ଅଫିସକୁ ଡକାଇ ପଠାଇ, ଦୁଆର ବନ୍ଦ କରି, ନିବୁଜ ଘର ଭିତରେ ଧମକ ଦେଇ ଥିଲେ- ଖବରଦାର, ତୁମ ବାପା କମ୍ପାନୀରେ ଚାକିରୀ କରୁଛନ୍ତି । ତୁମେ ବି କରୁଚ । ତୁମକୁ ଗୁଳି କରି ଦିଆଯିବ । ଏଇଟା ଋଷିଆ ନୁହେଁ । ଯା' ପରେ ମୁଁ ବିନମ୍ରତା ସହିତ ଚାକିରୀରୁ ଇସ୍ତଫା ଦେଇଥିଲି । ଯେ ସେଇ ୧୯୩୭ ସାଲ କଥା ।

୧୯୩୮ରେ ଜାମସେଦ୍‌ପୁର ସ୍କୁଲମାନଙ୍କରୁ ଟାଟା କମ୍ପାନୀ କର୍ତ୍ତୃପକ୍ଷ, ଓଡ଼ିଆ ଶିକ୍ଷା ଉଠାଇ ଦେବାର ନିଷ୍ପତ୍ତି ନେଲେ, ବିହାର କଂଗ୍ରେସର ଚୁଙ୍ଗ ନେତାମାନଙ୍କ ପ୍ରରୋଚନାରେ । ଟାଟା କମ୍ପାନୀରେ କାମ କରୁଥିବା ଓଡ଼ିଆ ଶ୍ରମିକଙ୍କ ପକ୍ଷରୁ କେତେଜଣ ପ୍ରତିନିଧି କମ୍ପାନୀର ଓ୍ୱାର୍କସ୍ ମାନେଜର, ଜେ.ଜେ, ଗାନ୍ଧିଙ୍କୁ ଡେପୁଟେସନରେ ଯାଇଁ ଦେଖା କରିବାକୁ ଅନୁମତି ମାଗିଲେ । କିନ୍ତୁ ସେମାନଙ୍କୁ ମି. ଗାନ୍ଧି ନାସ୍ତି କରିଦେଲେ । ଏଇ ଘଟଣା ସମ୍ପର୍କରେ ମିଷ୍ଟର ଗାନ୍ଧିଙ୍କ ଏକଚ୍ଛତ୍ରବାଦୀ ମନୋଭାବର କଡ଼ା ସମାଲୋଚନା କରି ଲେଖିଲି, ସେଠାରୁ ମୋ ସମ୍ପାଦନାରେ ପ୍ରକାଶ ପାଉଥିବା ସାପ୍ତାହିକ ପତ୍ରିକା 'ବିଚ୍ଛିନ୍ନା'ରେ । ସମ୍ବାଦଟି ପ୍ରକାଶ ପାଇବାର ଦୁଇଦିନ ପରେ ଆମ ବସାଘର ସାମ୍‌ନାରେ କମ୍ପାନୀର ଭଡ଼ାଟିଆ ଗୁଣ୍ଡାଦଳ ଆସି ହଲ୍ଲାକଲେ ଏବଂ ମତେ ଶୀଘ୍ର ଯମାଳୟକୁ ପଠାଇ ଦେବେ ଧମକ ଚମକ ଦେଇଗଲେ । ସେମାନଙ୍କୁ ମୁକାବିଲା କରିବାକୁ ପଡ଼ିଥିଲା । ଜଣେ ବିଶିଷ୍ଟ ଓଡ଼ିଆ ଅଫିସର ୰ ପରମାନନ୍ଦ ମହାପାତ୍ର ମତେ ଆଇ.ଏନ୍.ଟି.ୟୁ.ସିର ଆଦର୍ଶବାଦ ସଚ୍ଚୋଟ ନେତା ଅବଦୁଲ ବାରିଙ୍କ ପାଖକୁ ନେଇ ପରିଚୟ କରାଇ ଦେଇଥିଲେ । ସେ ମୋ ପିଠି ଥାପୁଡ଼େଇ ଅଭୟ ଦେଲେ । ନିଜ ଆଦର୍ଶବାଦରେ ଅଟଳ ରହିବା ପାଇଁ ସେ ପରୀକ୍ଷାର ବି ସମ୍ମୁଖୀନ ହେବାକୁ ପଡ଼ିଥିଲା ।

୧୯୫୪ରେ ଫଜଲ୍ ଅଲିଙ୍କ ଅଧ୍ୟକ୍ଷତାରେ ସୀମାକମିଶନ ବସିଲା । ସିଂହଭୂମିକୁ ଓଡ଼ିଶା ସହିତ ମିଶାଇବା ପାଇଁ ଓଡ଼ିଆଙ୍କ ପକ୍ଷରୁ ଚାଲିଥିବା ଆନ୍ଦୋଳନ

ସହିତ ମୁଁ ସଂପୃକ୍ତ ଅଛି, ଏବଂ 'ସିଂହଭୂମି ଓଡ଼ିଆ ସାହିତ୍ୟ ସମାଜ'ର ସଭାପତି ଭାବେ, ତଥା 'ବିଚ୍ଛିନ୍ନା' ସମ୍ବାଦ ପତ୍ରର ସମ୍ପାଦକ ଭାବେ 'ବିହାର' ବିରୁଦ୍ଧରେ ଜନମତ ଜାଗ୍ରତ କରାଇବାରେ ମୁଁ ନେତୃତ୍ୱ ନେଇଚି ଏଇ ସିଦ୍ଧାନ୍ତରେ ଉପନୀତ ହୋଇ ବିହାର ସରକାରଙ୍କ ପୁଲିସ ବିଭାଗ, ବିନା ୱାରଣ୍ଟରେ ମତେ ଥାନା ଘରେ ୨୪ ଦିନ ଗୋଟାଏ ଆବର୍ଜନା ପୂର୍ଣ୍ଣ ଘରେ ସକାଳ ଆଠଟାରୁ ସନ୍ଧ୍ୟା ୪ଟା ପର୍ଯ୍ୟନ୍ତ ବନ୍ଦୀଭାବେ ଅଟକ କରି ରଖି ଅମାନୁଷିକ ନିର୍ଯ୍ୟାତନା ଦେଲେ। ଏଇ ସମ୍ବାଦ 'ସମାଜ'ର ୧୪/୮/୧୯୫୪ ଦୈନିକ ସଂସ୍କରଣରେ ପ୍ରକାଶ ପାଇଯିବାରୁ ମୋ ପ୍ରତି ଜାମସେଦପୁର ପୁଲିସର ଯେଉଁ ଅକଥନୀୟ ଅତ୍ୟାଚାର ଆରମ୍ଭ ହୋଇଗଲା, ତା'ର ବି ମୁକାବିଲା କରିବାକୁ ପଡ଼ିଥିଲା। ଶେଷରେ ଏପରି ହେଲା ଜଣେ ହେଲେ ଓଡ଼ିଆ ମୋ ପାଖକୁ ଆସିବା ପାଇଁ ଭୟ କଲେ। କାଳେ, ପୁଲିସ୍ ସେମାନଙ୍କୁ ଥାନାକୁ ଧରି ନେଇ ପିଟାପିଟି କରିବ। ତା'ପରେ ବାଧ ହେଇ ମୋତେ ଜାମସେଦ୍‌ପୁରରୁ ମୋ ପ୍ରେସ୍ ଉଠେଇ ନେଇ ରାଉରକେଲା ଆସିବାକୁ ପଡ଼ିଥିଲା।

୧୯୬୨ରେ ଆଉ ଏକ ସଂଘର୍ଷର କଥା। ରାଉରକେଲାରେ, କଂଗ୍ରେସ ଦଳ ଜଣେ ରାଜାଙ୍କୁ, ରାଜ୍ୟ ବିଧାନ ସଭାକୁ ଟିକେଟ ଦେଇ ଭୋଟ ଲଢ଼େଇରେ ଛିଡ଼ା କରେଇଲେ। ଓଡ଼ିଶା କଂଗ୍ରେସର ତତ୍‌କାଳୀନ ତୁଙ୍ଗ ନେତା, 'ସମାଜବାଦ'ର ପ୍ରବକ୍ତା, ଶ୍ରମିକ ସହରରେ ଜଣେ ଖଟିଖିଆ ମଜଦୁରକୁ ପ୍ରାର୍ଥୀଭାବେ ନ ବାଛି, କେବେ ଭୁଲରେ ଦିନେ ରାଉରକେଲା ବାସୀଙ୍କ ଦୁଃଖ ଦୁର୍ଦ୍ଦଶା କଥା ବୁଝିବାକୁ ଚେଷ୍ଟା କରିନଥିବା ଜଣେ ସାମନ୍ତ ବାଦୀ ରୁଲିଂ 'ଚିଫ୍‌ଟେନ୍'ଙ୍କୁ ରାଜ୍ୟ ବିଧାନସଭା ପାଇଁ ପ୍ରତିଦ୍ୱନ୍ଦିତା କରିବାକୁ ସୁପାରିଶ କରିବା ପଛରେ କଂଗ୍ରେସ ଆଦର୍ଶର ଖିଲାପ କରିଛନ୍ତି ଏବଂ ଶ୍ରମିକ ସ୍ୱାର୍ଥ ବିରୋଧୀ କାର୍ଯ୍ୟ କରିଛନ୍ତି କହି, ନିର୍ଭୀକ ପ୍ରତିବାଦ କଲି ଏକ ସଭାରେ। ଏହାର ପରିମାଣ ଏଇ ହେଲା- ମୁଁ ରାଉରକେଲାରେ ନଥିବା ସମୟରେ, ମୋ ଅନୁପସ୍ଥିତିର ସୁଯୋଗ ନେଇ ୧୯୬୭ ଜାନୁଆରୀ ୨୬ ତାରିଖ ରାତି ୨ଟାରେ ମୋ ପ୍ରେସ ଘରେ ପେଟ୍ରୋଲ ପକେଇ ଦେଲେ, ରାଉରକେଲାରେ ଥିବା ଓଡ଼ିଶାର ତୁଙ୍ଗ କଂଗ୍ରେସ ନେତାଙ୍କ ଅନୁଗାମୀମାନେ। ଏ କନ୍ଦଳ ବିରୁଦ୍ଧରେ ବି ସଂଘର୍ଷ କରିବାକୁ ପଡ଼ିଚି। କିନ୍ତୁ ଏ ସବୁ ଭିତରେ ମୁଁ କେବେ ଭାଙ୍ଗି ପଡ଼ି ନାହିଁ। ବରଂ ମୋ ପ୍ରେସ ବ୍ୟବସାୟକୁ ସ୍ଥାନାନ୍ତରିତ କରିଚି କିନ୍ତୁ ଜାତୀୟତାବାଦୀ ମନୋଭାବରୁ ବିଚ୍ୟୁତ ହୋଇନାହିଁ। ସ୍ୱାର୍ଥସିଦ୍ଧି ପାଇଁ ସାଲିସ କରିନାହିଁ କାହା ସହିତ। ଏବଂ ଏ ସବୁ ଘଟଣାକୁ ମୋ କାବ୍ୟ, କବିତା, ଗଳ୍ପ ଉପନ୍ୟାସରେ ପ୍ରାଞ୍ଜଳଭାବେ ବର୍ଣ୍ଣନା କରିଚି। ସେ ସବୁ ପ୍ରକାଶ କରିଚି। ପ୍ରକାଶ କରାଇଚି ବିଭିନ୍ନ ପ୍ରକାଶକଙ୍କ ସାହାଯ୍ୟରେ। କିନ୍ତୁ 'ସାହିତ୍ୟ'

ସୃଷ୍ଟି ପାଇଁ, ଅର୍ଥାତ୍ ମୋ ସାରସ୍ଵତ ସୃଷ୍ଟିକୁ ଲୋକଲୋଚନକୁ ଆଣିବା ପାଇଁ ମୁଁ କାହାର ଶରଣାପନ୍ନ ହୋଇ ନାହିଁ । ପ୍ରକାଶଙ୍କ ସୌଜନ୍ୟକୁ ସମ୍ମାନ ଦେଇଛି । ଲେଖାର ମୂଲ୍ୟ ନପାଇ କେବଳ 'ପାଣ୍ଡୁଲିପି' କୌଣସି ମତେ ପ୍ରକାଶ ପାଇଯାଉ ଏବଂ ଜଣେ 'ଲେଖକ' ହେବାର ସୁନାମ ଅର୍ଜନ କରେଁ, ଏ ବିଚାର ଧାରା ନେଇ କେବେ ପଥଭ୍ରଷ୍ଟ ହୋଇନାହିଁ । ଏବଂ ଏ କ୍ଷେତ୍ରରେ ମୋର ଅଭିମତ ହେଲା- କୌଣସି ଲେଖକ ଯଦି ପଥଭ୍ରଷ୍ଟ ହେଉଥାଏ, ତେବେ ସେ ଦୋଷ ଲେଖକର । ବ୍ୟବସାୟୀ ପୁସ୍ତକ ପ୍ରକାଶକର ନୁହେଁ ।

ପ୍ରକାଶକଙ୍କୁ ଯେଉଁମାନେ ଦୋଷ ଦେଉଛନ୍ତି ସେ ଲେଖକମାନେ ଆଗେ ନିଜ ଗୋଷ୍ଠିର ଦୋଷ ଦୁର୍ବଳତାର କାରଣ ଖୋଜି ଦେଖିବା ଉଚିତ । ବିଭିନ୍ନ ପ୍ରଦେଶର ଲେଖକମାନେ ଲେଖା ଲେଖିରୁ ପ୍ରଚୁର ଆୟ କରୁଥିବା ସ୍ଥଳେ, ଏବଂ ଓଡ଼ିଶାରେ ମାଟି, ବାଲି ଘାସର ବି ବିକ୍ରୟ ମୂଲ୍ୟ ଦିନକୁ ଦିନ ବଢ଼ି ଚାଲିଥିବା ବେଳେ ଓଡ଼ିଆ ଲୋକେ ତା' ମୂଲ୍ୟବାନ ସମୟ ବିନିମୟରେ ହାଡ଼ଭଙ୍ଗା ପରିଶ୍ରମ କରି ସାହିତ୍ୟସୃଷ୍ଟି କରୁଥିବା ବେଳେ, ଉପଯୁକ୍ତ ପାରିଶ୍ରମିକ କାହିଁକି ପାଇବନି, ଏ କଥାର ବିଚାର ପ୍ରଥମେ ଲେଖକ ଗୋଷ୍ଠି ଏକତ୍ର ବସି ଭାବିବା ଉଚିତ ନୁହେଁ କି ? ସଂଘବଦ୍ଧ ଭାବରେ ଏ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନର ବିଚାର ବିମର୍ଷ ହେଲାଣି କି ? ମୁଁ ଜାଣିବାରେ ଓଡ଼ିଶାର ପ୍ରତ୍ୟେକ ଲେଖକ କେବଳ ହତାଶ ଭାବେ ପରସ୍ପର ଭିତରେ ନିଜର ଅସହାୟତା କଥା ବର୍ଣ୍ଣନା କରି ଅନୁଶୋଚନା କ୍ଷୁବ୍ଧ ହେବା ଛଡ଼ା, ଏ ଦୁର୍ଗତିରୁ କିପରି ରକ୍ଷା ପାଇବେ, ସେଥିପାଇଁ ଉଦାର ମନୋଭାବ ନେଇ ଏ ପର୍ଯ୍ୟନ୍ତ ଆଗେଇ ଆସି ନାହାଁନ୍ତି । ବରଂ ଦୁଃଖର ସହିତ କହିବି, ଓଡ଼ିଶା ଲେଖକ ଗୋଷ୍ଠିର ଶ୍ରେଣୀ ସଚେତନତା ତ ନାହିଁ, ତା ବଦଳରେ ଅଛି ଆତ୍ମ କେନ୍ଦ୍ରିକ ଭାବ, ଅସ୍ଵାଳନ ଆଉ ପରଶ୍ରୀକାତରତା ! ଯା ବି ଲକ୍ଷ୍ୟ କରିଛି- ଜଣେ ଲେଖକ ଅନ୍ୟ ଲେଖକକୁ ସମ୍ମାନ ଦେବାତ ଦୂରର କଥା, ତା ସୃଷ୍ଟିକୁ ମଧ୍ୟ ସ୍ଵୀକାର କରେ ନାହିଁ । ଫଳରେ ଉଦାରତା ବିମୁଖ ଆତ୍ମକେନ୍ଦ୍ରିକ ମନୋଭାବ ହିଁ ଓଡ଼ିଆ ସାହିତ୍ୟିକମାନଙ୍କର 'ଲେଖାରୁ ଉପାର୍ଜନ କରିବା' ପଥରେ ପ୍ରଧାନ ପ୍ରତିବନ୍ଧକ ଭାବେ ଛିଡ଼ା ହୋଇ ରହିଛି । ସାହିତ୍ୟକୁ ଜୀବିକା କରି ଓଡ଼ିଶାରେ ଏ ପର୍ଯ୍ୟନ୍ତ ଜଣେ ହେଲେ କେହି ନିଜ ପରିବାରର ଭରଣପୋଷଣ କରିବା ସମ୍ଭବ ହୋଇପାରି ନାହିଁ । ଅୟସୀ ଜୀବନ ଯାପନ କରିବା ତ ଦୂରର କଥା ।

ଏଇ ପରିପ୍ରେକ୍ଷୀରେ ଓଡ଼ିଶାର ସାରସ୍ୱତ ସାଧକମାନଙ୍କର 'ବର୍ତ୍ତମାନ' ଯେପରି ଦୁଃଖ ଓ ନୈରାଶ୍ୟର କଥା- ଭବିଷ୍ୟତ ମଧ୍ୟ ସେଇପରି ଅନ୍ଧକାରଛନ୍ନ ହେଇ ରହିବ, ଯଦି ସଂଘବଦ୍ଧ ଭାବେ ଛୋଟ-ବଡ଼କବି ଲେଖକ ଶିଳ୍ପୀ ଓ କଳାକାର

ସମସ୍ତେ ଏକଯୁଟ୍ ହୋଇ ଗୋଟିଏ ପ୍ଲାଟଫର୍ମ ଉପରେ ବସି ନିଜ ନିଜ ଶ୍ରମର ଯଥାର୍ଥ ମୂଲ୍ୟ କେତେ ଏବଂ ତାହା କିପରି ନିର୍ବିଘ୍ନରେ ଆଦାୟ ହୋଇ ପାରିବ ତା'ର ବିଚାର ଏବଂ ପ୍ରତିକାର ସଂପର୍କରେ ବିହିତ ବ୍ୟବସ୍ଥା ଗ୍ରହଣ ନକରନ୍ତି ।

ଏ କ୍ଷେତ୍ରରେ ଲେଖକ ଓ କଳାକାରଙ୍କ ପ୍ରତି ଓଡ଼ିଶା ସରକାରଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ମଧ୍ୟ ଅଛି ।

ରାଜ୍ୟର ପ୍ରଶାସନିକ ଦାୟିତ୍ୱ ଯୋଉ ନିର୍ବାଚିତ ଲୋକ ପ୍ରତିନିଧିମାନେ ହାତରେ ନେଇ ଶାସନ କାର୍ଯ୍ୟ ପରିଚାଳନା କରୁଛନ୍ତି- ସାଂସ୍କୃତିକ ସଭା ସମିତିମାନଙ୍କରେ ସେମାନେ ଭାଷଣ ପ୍ରସଙ୍ଗରେ କହିଥାନ୍ତି: ସାହିତ୍ୟ ହେଉଚି ଗୋଟିଏ ଜାତିର ପ୍ରାଣ । ସାହିତ୍ୟକୁ ଛାଡ଼ି ଦେଲେ ସଭ୍ୟତା ନାହିଁ ଭାଷା ନାହିଁ । ସଭ୍ୟତା ନ ଥିଲେ କୌଣସି  ଜାତିର ବଞ୍ଚିବାର ଅଧିକାର ନାହିଁ । ଯେତେ ବିପ୍ଳବ ପୃଥିବୀରେ ହୋଇଚି, ସେ ବିପ୍ଳବ ପଛରେ ସାହିତ୍ୟିକମାନଙ୍କ ଭୂମିକା ସବୁଠାରୁ ବଳି ଗୁରୁତ୍ୱପୂର୍ଣ୍ଣ । ସମାଜରେ ଯେଉଁ ବିପ୍ଳବର ସୂତ୍ରପାତ ହୁଏ ବା ପରିବର୍ତ୍ତନ ଆସେ, ତାର ବହୁ ପୂର୍ବରୁ ସାହିତ୍ୟିକମାନେ ସେ ସବୁର ସନ୍ଧାନ ପାଇଥାନ୍ତି । ଯୁଗର ଶ୍ରେଷ୍ଠ ସାହିତ୍ୟିକଙ୍କ ପ୍ରାଣରେ ପ୍ରଚଣ୍ଡ ଆତ୍ମ ବିଶ୍ୱାସର ବହ୍ନି ପ୍ରଜ୍ଜଳିତ ହୋଇଥାଏ ଏବଂ ସେମାନେ ସମାଜରେ ବିପ୍ଳବକୁ ଆହ୍ୱାନ କରି ଆଣନ୍ତି ।" ଏ ସବୁ କହିଲା ବେଳେ ସେମାନେ, ଜାତୀୟ କବି ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟକୃତି ସମଗ୍ର ବିଶ୍ୱରେ ଅଦ୍ୱିତୀୟ, ଏବଂ ଓଡ଼ିଶାର ସ୍ଥାପତ୍ୟକଳା ଓଡ଼ିଆ ଜାତି ପାଇଁ ଗର୍ବ ଓ ଗୌରବର କଥା ଏହା ମଧ୍ୟ ଓଜସିନୀ କଣ୍ଠରେ କହି ଜନତା ପାଖରୁ ହାତତାଳି ନେଇଥାନ୍ତି । କିନ୍ତୁ ଦୁଃଖର କଥା, ସ୍ୱାଧୀନତା ପ୍ରାପ୍ତି ପରଠାରୁ, ଯେଉଁ ତରୁଣ ଲେଖକମାନେ, ସର୍ବଭାରତୀୟ ସ୍ତରରେ ଏପରିକି ଆନ୍ତର୍ଜାତିକ କ୍ଷେତ୍ରରେ ଓଡ଼ିଆ କାବ୍ୟ, କବିତା, କଳା ଓ ସଂଗୀତର ଉତ୍କର୍ଷତା ପ୍ରତିପାଦନ କରିବା ପାଇଁ ସାଂସ୍କୃତିକ ସାଧନାରେ ନିଷ୍ଠାର ସହ ଲାଗି ରହିଛନ୍ତି, ସେମାନଙ୍କୁ ସାହିତ୍ୟିକ ଭାବେ, କଳାକାରଭାବେ ଏବଂ ଶିଳ୍ପୀ ଭାବେ ଆତ୍ମନିର୍ଭରଶୀଳ ହେଇ ବଞ୍ଚିବା ପାଇଁ, ସେମାନଙ୍କ କୃତି ଓ ନିର୍ମାଣର ଯଥାର୍ଥ ମୂଲ୍ୟ ପାଇବାରେ, ସେମାନଙ୍କୁ ସାହାଯ୍ୟ କରିବାର ଦାୟିତ୍ୱ କ'ଣ ଲୋକ ପ୍ରତିନିଧି ସରକାରଙ୍କର ନୁହେଁ ? ଓଡ଼ିଶା ପ୍ରଦେଶରେ ସାହିତ୍ୟିକ ବା କଳାକାରଙ୍କ ସଂଖ୍ୟା କେତେ ? ଛୋଟ ବଡ଼ ସମସ୍ତଙ୍କୁ ମିଶେଇଲେ ଚାରିଶହ ବା ପାଞ୍ଚଶହ ହେବ କି ନାହିଁ ସନ୍ଦେହ । ଏଇ କେତେଜଣ ରାଜ୍ୟର ଅଢ଼େଇ କୋଟି ଲୋକଙ୍କ ପାଇଁ ଜାତୀୟ କଳା, ସାହିତ୍ୟ, ସଙ୍ଗୀତ ଓ ସଂସ୍କୃତିର ନବ ଦିଗନ୍ତ ଆଣିବା ପାଇଁ ଯଦି ସାଧନାରତ ରୁହନ୍ତି, ତେବେ ସମଗ୍ର ଜାତି ପକ୍ଷରୁ ସରକାରଙ୍କର କ'ଣ ସେଇ କୃତି ସନ୍ତାନମାନଙ୍କ ପାଇଁ ଆର୍ଥିକ

ଉତ୍ପାଦନର ବ୍ୟବସ୍ଥା କରାଇ ଦେବା ଏବଂ ସେମାନଙ୍କ ରଚନାବଳୀର ପ୍ରକାଶ ବ୍ୟବସ୍ଥା କରାଇ ଦେଇ ସେଥିରୁ ଉପାର୍ଜନ କରିବାର ସମ୍ମାନଜନକ ପନ୍ଥା ସ୍ଥିର କରିନେବା ଉଚିତ ନୁହେଁ ?

ଭୋକ ଉପାସରେ, ଅଭାବ ଅନାଟନରେ ଓଡ଼ିଆ ସାହିତ୍ୟିକ ଜାତୀୟ ସାହିତ୍ୟ ସୃଷ୍ଟି କରିଯିବ ଅଥଚ ଆଗାମୀ ଦିନର ଜନସାଧାରଣଙ୍କ ପ୍ରତିନିଧି ବିଶ୍ୱ ସମ୍ମୁଖରେ ଛିଡା ହୋଇ, ଓଡ଼ିଆ ସାହିତ୍ୟ, ସଂସ୍କୃତି ସମ୍ପର୍କରେ ଉଚ୍ଚବାଚ୍ୟ କରି ହାତତାଳି ନେବ, ଏହା ଠୁ ବଳି ପ୍ରବଞ୍ଚନା, ଆଉ ହିପୋକ୍ରେସି କ'ଣ ଥାଇପାରେ ? ଏ ପ୍ରଦେଶରେ ମାଛଚାଷ, ଅଣ୍ଡା ଚାଷ ପାଇଁ ଋଣ ଦିଆଯିବା, ହଳ ଲଙ୍ଗଳ ପାଇଁ ଅନୁଦାନର ବ୍ୟବସ୍ଥା ରହିବା ବେଳେ ସାହିତ୍ୟ କ୍ଷେତ୍ରରେ କଲମ ଚାଷ କରୁଥିବା ଶିକ୍ଷିତ ଯୁବକଙ୍କୁ ତାଙ୍କ ପାଣ୍ଡୁଲିପି ଛାପିବା ପାଇଁ ଋଣ ବା ଅନୁଦାନର ବ୍ୟବସ୍ଥା କ'ଣ ସରକାରଙ୍କ ପକ୍ଷରୁ ରହିବା ଉଚିତ ନୁହେଁ ? ଏ ସବୁ ପାଇଁ ଓଡ଼ିଶାର ସାହିତ୍ୟିକମାନ ଏକଯୁଟ ହୋଇ ଦାବି କରିବାରେ ସମୟ କ'ଣ ଆସି ନାହିଁ ? ଏ ଋଣ ବାବଦକୁ ଲେଖକର ପ୍ରକାଶିତ ପୁସ୍ତକରୁ ସେତିକି ମୂଲ୍ୟର ବହି, ରାଜା ରାମମୋହନ ଟ୍ରଷ୍ଟ ପକ୍ଷରୁ ଏବଂ ଡି.ପି.ଆଇ.ଙ୍କ ପକ୍ଷରୁ ସରକାର ବିଭିନ୍ନ ସ୍କୁଲ, କଲେଜ ଓ ପାଠାଗାର ପାଇଁ କିଣି ନେବାରତ ବ୍ୟବସ୍ଥା କରାଯାଇ ପାରନ୍ତା । ଏବଂ ଏହା ହିଁ ହୁଅନ୍ତା ଲେଖକମାନଙ୍କ ପ୍ରତି ସୃଜନଶୀଳ ହୋଇ ବଞ୍ଚିବାର ଏକ ସମ୍ମାନଜନକ ଉଦାହରଣ କଥା । ଅନ୍ୟ ଦିଗରେ ଲୋକପ୍ରତିନିଧି ସରକାର ମଧ୍ୟ ରାଜ୍ୟର ସାହିତ୍ୟିକ ଓ କଳାକାରଙ୍କ ପ୍ରତି ତା'ର ଜାତୀୟ କର୍ତ୍ତବ୍ୟ କରିବାରେ ତ୍ରୁଟି କରି ନାହିଁ, ସାହିତ୍ୟ ଓ ସଂସ୍କୃତିର ପୃଷ୍ଠପୋଷକ ଭାବରେ ଏକ ଆଦର୍ଶର ପରମ୍ପରା ସୃଷ୍ଟି କରିଚି, ଏ ଗର୍ବରେ ତ ଅହଙ୍କୃତ ହୋଇ ପାରନ୍ତା ।

ଏ ସବୁ ଚିନ୍ତାଧାରାକୁ କାର୍ଯ୍ୟକାରୀ କରିବା ପାଇଁ ଅନ୍ୟ ଏକ ପନ୍ଥା ମଧ୍ୟ ଅଛି । ବିଭିନ୍ନ କଳକାରଖାନା ବା ସରକାରୀ ସଂସ୍ଥାମାନଙ୍କରେ ଶ୍ରମିକ ଇଉନିଅନ ସଙ୍ଗଠନମାନ ଅଛି । ଶ୍ରମ ବିନିମୟରେ ସାହିତ୍ୟ ସୃଷ୍ଟି କରୁଥିବା ଲେଖକମାନଙ୍କର ଏକ ରେଜିଷ୍ଟ୍ରିଭୁକ୍ତ ଲେଖକ ଇଉନିଅନ (Orissa Writers' Union) ମଧ୍ୟ ରହିବା ଉଚିତ । ଏହି ଇଉନିଅନ ଏକ ଲିଆସନ ସଂସ୍ଥାଭାବେ ଓଡ଼ିଶା ସରକାର ଓ ଓଡ଼ିଶା ପୁସ୍ତକ ପ୍ରକାଶକ ସଂଘ ସହିତ ଲେଖକମାନଙ୍କ ପାରିଶ୍ରମିକ ଏବଂ ପ୍ରାପ୍ୟ ସମ୍ପର୍କରେ ଆବଶ୍ୟକୀୟ ବ୍ୟବସ୍ଥା ଗ୍ରହଣ କରିପାରନ୍ତା । ଓଡ଼ିଶାରେ ସମସ୍ତ ପ୍ରକାଶକଙ୍କ ଏକ ମିଳିତ ଅନୁଷ୍ଠାନ ରହି ଓଡ଼ିଶା ସରକାରଙ୍କ ସହିତ ସେମାନଙ୍କ ବ୍ୟବସାୟ ସମ୍ପର୍କିତ ଦାବୀ ଗୁଡ଼ିକୁ ହାସଲ କରୁଥିବା ସ୍ଥଳେ, ଓଡ଼ିଶାର

ଲେଖକମାନଙ୍କର ଏକ ଇଉନିଅନ ସେମାନଙ୍କ ନ୍ୟାଯ୍ୟ ଦାବୀ ହାସଲ କରିବା ପାଇଁ ଆଗଭର ହେବାରେ ଅପରାଧ ବା କ'ଣ ? ଏହା ଦ୍ୱାରା କୌଣସି ବ୍ୟକ୍ତି ବିଶେଷ ସାହିତ୍ୟିକ କୌଣସି ପ୍ରକାଶକର କୋପ ଦୃଷ୍ଟିରେ ପଡ଼ିବାର ସମ୍ଭାବନା ରହନ୍ତା ନାହିଁ। ଯେଉଁ ନୀତି ନିର୍ଦ୍ଧାରିତ ହୁଅନ୍ତା ତାର ସୁବିଧା ସୁଯୋଗ ପାଆନ୍ତେ ପ୍ରତ୍ୟେକ ଛୋଟ ବଡ଼ ସାହିତ୍ୟିକ। ଅବଶ୍ୟ ଏଠି କହି ରଖିବା ଭଲ ଏଇ କାର୍ଯ୍ୟଟି କରିବା ପାଇଁ ଆଜିଠୁ ୧୪ବର୍ଷ ତଳେ ଚେଷ୍ଟାକରି ମୁଁ କୌଣସି ସହଯୋଗ ଯାଇ ନଥିଲି ମୋର ସାହିତ୍ୟିକ ବନ୍ଧୁମାନଙ୍କଠୁ। କାରଣ ପ୍ରକାଶକ ପାଖରେ କେହି ଚିହ୍ନା ପଡ଼ିବାକୁ ଚାହିଁଲେ ନାହିଁ। ନିଜ ନିଜ ଚେଷ୍ଟାରେ ଧରାଧରି କରି ବହିଛପେଇ, ପ୍ରକାଶକଙ୍କଠୁ ଯାହା ପାଉଛନ୍ତି, ସେତେକ କାଳେ ଚାଲିଯିବ ଏଇ ଆଶଙ୍କାରେ 'ଏ ଉଦ୍ୟମ କ'ଣ ସଫଳ ହେବ ?' ଏତିକି କହି ଚୁପ୍‌ଚାପ ଆଡ଼େଇ ଗଲେ। ପନ୍ଦର ବର୍ଷ ପରେ ସେ ଅବସ୍ଥାର ଯେ କିଛି ପରିବର୍ତ୍ତନ ହେଇଚି ମୋର ବିଶ୍ୱାସ ନୁହେଁ।

ଏ ପର୍ଯ୍ୟନ୍ତ ସାହିତ୍ୟକୁ ବଞ୍ଚିବାର ମାଧ୍ୟମ ରୂପେ ଗ୍ରହଣ କରି ଆତ୍ମନିର୍ଭରଶୀଳ ହୋଇ ବଞ୍ଚିରହି ପାରି ନଥିବା ଓଡ଼ିଆ ସାହିତ୍ୟିକ ପାଇଁ ତା'ର ଭବିଷ୍ୟତ୍ କେବଳ ଭାବବିଳାସରେ କେତେ ଖଣ୍ଡ ବହି ଲେଖି ତାକୁ କୌଣସି ମତେ ପ୍ରକାଶ କରାଇ, କେତେ ଜଣ ବନ୍ଧୁଙ୍କୁ ଧରାଧରି କରି ପ୍ରଶଂସା ମୂଳକ ପତ୍ର ପତ୍ରିକାରେ ପ୍ରକାଶ କରାଇବାରେ ଆତ୍ମ ସନ୍ତୋଷ ଲାଭ ଛଡ଼ା ଆଉ ବିଶେଷ କିଛି ନୁହେଁ, ଏହାହିଁ ମୋର ବିବଦମାନ ଉତ୍ତର।

ସାକ୍ଷାତକାର ପରିଚାଳନା- **ନଗେନ୍ଦ୍ର ମୋହନ ମହାନ୍ତି**

(ଏକାମ୍ର ଥିଏଟର୍ସ ପ୍ରକାଶିତ 'ଲକ୍ଷ୍ମୀଧର ପରିକ୍ରମା' ୧୯୮୪ ସୌଜନ୍ୟରୁ)

# ଏବଂ ଲକ୍ଷ୍ମୀଧର

" ଅଦ୍‌ଭୁତ ମଣିଷ ଲକ୍ଷ୍ମୀଧର ନାୟକ। ନବ ଗୁଂଜର ନା ସପ୍ତରଙ୍ଗ ରୋମାଞ୍ଚିତ ବିଳସ ଇନ୍ଦ୍ରଧନୁ। ବିରଳ ବିଚିତ୍ର ମଣିଷ। ସଂସାର ଡୋଠରେ ଘୋର ଗୃହସ୍ଥ ଥରେ ପଘାରୁ ଫିଟିଲେ ଅବାଧ ଆୱାରା। ରାଗିଲେ ବଡ଼ ବାଗ୍ମି, ଆନନ୍ଦରେ ହସର ଆକର୍ଷ ବିଜୁଳି ଛଟା ମୁଖ ମଣ୍ଡଳରେ। ସତରେ ଗୁରୁ ଗମ୍ଭୀର, ମିଛରେ ଅସଂଖ୍ୟ ତାରା ଫୁଟେଇ ଦେବେ ମଧ୍ୟାହ୍ନ ଆକାଶରେ।"

x x x

"ରାଉରକେଲା ମାଟିରେ ପ୍ରଥମ ସାହିତ୍ୟ ଚାଷ ଓ 'କଲଚରାଲ ଏକାଡ଼େମୀ' ତଥା 'ନବପତ୍ର'ର ଜନ୍ମ ବୃତ୍ତାନ୍ତ ଏବକୁ ଇତିହାସ ହେଲାଣି। କେହି କେହି ଉତ୍ସାହୀ ଲେଖକ ଉପର ଠଉରିଆ ଭାବେ ଦିନ ତାରିଖ ଓ ବ୍ୟକ୍ତି ବିଶେଷଙ୍କ ନାମ ଉଲ୍ଲେଖ କରି ଦେଉଛନ୍ତି। ଯାହା କି ବାସ୍ତବତାର ଅପଳାପ। ଅସଲ ମୂଳ ମଣିଷ ବା କର୍ମୀମାନଙ୍କ ପାଇଁ ଏହା କେତେ ପୀଡ଼ା ଦାୟକ ସେମାନେ କଳ୍ପନା କରି ପାରିବେ ନାହିଁ।"

ବିଷ୍ଣୁ ରାଉତରାୟ

"ମୁଁ ବାସ୍ତବଧର୍ମୀ। ଗାନ୍ଧୀଙ୍କୁ ପଢ଼ି ସତ୍ୟ ଅହିଂସା ଆଉ ସାଧୀନତା ଏ ସବୁ ସଂପର୍କରେ ଭାବିବାକୁ ବସିଲା ବେଳେ ମାର୍କସ ପଢ଼ି ମାନବବାଦୀ ହେବାକୁ ଅନୁପ୍ରାଣିତ ହେଇଚି। ଫଳରେ ସମାଜର ବାସ୍ତବଚିତ୍ର ଦେବାକୁ ଯାଇ ନିଃସ୍ୱ, ନିରନ୍ନ, ନିଗୃହୀତର ଦୁଃଖ ଦୁର୍ଦ୍ଦଶାକୁ ମୋ ଲେଖାରେ ଯେପରି ବିବୃତ କରିଚି, ସେଇପରି ସମାଜର ଏକ ସୁବିଧାବାଦୀ ଶ୍ରେଣୀ, ମନୋପଲିଷ୍ଟଗ୍ରୁପ, ଦୁର୍ବଳ ଶ୍ରେଣୀକୁ ଲୁଣ୍ଠନ କରିବାକୁ ଯୋଉ ଚକ୍ରାନ୍ତ ଚଳେଇଛି ତାର ବାସ୍ତବ ଚିତ୍ର ମଧ ଦେଇଛି ମୋ କବିତା, ଗଳ୍ପ, ଉପନ୍ୟାସ ଓ ନାଟକରେ। ଏ ସବୁ ଭିତରେ ରହିଚି ଶୋଷଣ ଆଉ ଅତ୍ୟାଚାର ବିରୁଦ୍ଧରେ ବିଦ୍ରୋହ ଆଉ ବିପ୍ଳବର ସ୍ୱର।"

ଲକ୍ଷ୍ମୀଧର ନାୟକଙ୍କ ସହିତ ସାକ୍ଷାତକାର

"ଲକ୍ଷ୍ମୀଧର ନାୟକ ଓଡ଼ିଆ ସାହିତ୍ୟରେ ଏକ ଅବହେଳିତ, ବିସ୍ମୟକର ପ୍ରତିଭା। ନାଟକ, ଉପନ୍ୟାସ, କାବ୍ୟ, କବିତା, ସାମ୍ବାଦିକତା କ୍ଷେତ୍ରରେ ସେ ତାଙ୍କର ଅମଳିନ ସାକ୍ଷର ଅଂକନ କରି ଯାଇଚନ୍ତି।"

ବିଭୁତି ପଟ୍ଟନାୟକ

" ତାଙ୍କ ଉପନ୍ୟାସରେ ସାଧୀନତା ପ୍ରାପ୍ତିର ପ୍ରଥମ ତିରିଶ ବର୍ଷର ଓଡ଼ିଶାର ଚିତ୍ର ଅତି ସ୍ପଷ୍ଟ। ଶ୍ରମଜୀବୀର ସଂଘର୍ଷ, ବୁଦ୍ଧିଜୀବୀର ହତାଶା, ଆଦର୍ଶବାଦର ପରାଜୟ ଏବଂ ନୈତିକତାର ଅଧଃପତନ ନୂଆ ସଭ୍ୟତାର ଆଙ୍ଗିକ ଭିତରେ ଯୋଉ ନୈରାଶ୍ୟର ମନସ୍ଥିତି ସୃଷ୍ଟି କରିଛି ସେଇ ମନସ୍ଥିତି ହିଁ ପାଠକକୁ ଅଭିଭୂତ କରେ।"

ପ୍ରଫୁଲ୍ଲ କୁମାର ମହାନ୍ତି